"ମୋ ଜୀବନ ଆଜିଠାରୁ ତୁମ ଜୀବନ ସହିତ ଛନ୍ଦି ହୋଇଗଲା । ଯଦି ତୁମ ପ୍ରତି କୌଣସି ପ୍ରକାର ବିଶ୍ୱାସଘାତକତା କରାଯିବ, ତେବେ ମୁଁ ଉପବାସ କରି ମରିବି ।" ଏତକ କହୁ କହୁ ଜୟପ୍ରକାଶଜୀଙ୍କ କଣ୍ଠରୁଦ୍ଧ ହୋଇଗଲା ।

ଏ ମଥା ପତେଇ ଦେବାର ଅୟମାରମ୍ଭ ହୋଇଥିଲା ୧୯୬୦ ମସିହା ମଇ ଦଶ ତାରିଖରୁ । ଚାରିବର୍ଷ ପୂର୍ବରୁ ୧୯୬୦ ମସିହାରେ ବିନୋବାଜୀ ଚମ୍ବଲର ଦସ୍ୟୁ ଅଧ୍ୟୁସିତ ଅଞ୍ଚଳରେ ପଦଯାତ୍ରା ଆରମ୍ଭ କଲେ । ତାହା ପୂର୍ବରୁ ପଞ୍ଜାବରେ ପଦଯାତ୍ରା କଲାବେଳେ ଦସ୍ୟୁ ତହଶିଲଦାର ସିଂ ତାଙ୍କୁ ଚିଠି ଲେଖିଥିଲେ ଏ ଡକାଏତ ସମସ୍ୟାରେ ମୁଣ୍ଡ ପୂରାଇବା ପାଇଁ । ତହଶିଲଦାର ସିଂ ହେଉଛନ୍ତି ଚମ୍ବଲର ସେହି ଦସ୍ୟୁ ମାନସିଂର ପୁଅ-ଯାହାକୁ ଚମ୍ବଲର ଦରିଦ୍ର ଜନତା ଧର୍ମ ଓ ନ୍ୟାୟର ଅବତାର କହି ଶ୍ରଦ୍ଧା କରୁଥିଲେ ଏବଂ ପୁଲିସ ଓ ସରକାରଙ୍କ ଦୃଷ୍ଟିରେ ଯେ ଥିଲା ନୃଶଂସତା ଓ କ୍ରୁରତାର ଅବତାର । ପୁଲିସ୍ ସହିତ ସଂଘର୍ଷ ଫଳରେ ତହଶିଲଦାର ଆହତ ହୋଇ ଧରାପଡ଼ି ନୈନୀ ଜେଲରେ ବନ୍ଦୀ ଥିଲେ । ସେ ବିନୋବାଜୀଙ୍କର ସାକ୍ଷାତ ପ୍ରାର୍ଥନା କରି ବିନୋବାଜୀଙ୍କୁ ଖଣ୍ଡିଏ ଚିଠି ଲେଖିବାରୁ ବିନୋବାଜୀ ତାଙ୍କ ଅନ୍ତରଙ୍ଗ ଶାନ୍ତି ସୈନିକ ମେଜର ଜେନେରାଲ ଯଦୁନାଥ ସିଂଙ୍କୁ ତହଶିଲଦାର ସିଂଙ୍କ ସହିତ ସାକ୍ଷାତ କରିବା ପାଇଁ ପଠାଇଲେ । ତହଶିଲଦାର ସିଂଙ୍କ ସହିତ ଜେଲରେ କଥାବାର୍ତ୍ତା କରିସାରିବା ପରେ ମେଜର ଜେନେରାଲ ଯଦୁନାଥ ସିଂ ଓ ବିନୋବାଜୀ ଚମ୍ବଲ ଉପତ୍ୟକାର ବାଘଙ୍କୁ ପୋଷା ମନେଇବା କାମ ହାତକୁ ନେବାକୁ ସ୍ଥିର କଲେ ।

x x x x x

"ନମୋନମଃ ସ୍ତେନାନାଂ ପତୟେ ନମୋନମଃ
ନମଃ ପୁଞ୍ଜିଷ୍ଟେଭ୍ୟେଶ ନମଃ ନିଷାଦେଭ୍ୟଃ ।
ବ୍ରହ୍ମଦାଶା ବ୍ରହ୍ମଦାସା
ବ୍ରହ୍ମୈବେମେ କିତବା ।"

"ସେ ଡକାଏତଙ୍କ ସର୍ଦ୍ଦାରଙ୍କୁ ନମସ୍କାର, ସେ କ୍ରୁର ହିଂସ୍ରଙ୍କୁ ନମସ୍କାର । ଏ ଠକ, ଏ ଦୁଷ୍ଟ, ଏ ଚୋର ସମସ୍ତେ ବ୍ରହ୍ମ । ଏ ସମସ୍ତଙ୍କୁ ନମସ୍କାର ।" କିଏ କହୁଛି ଏ କଥା ? 'ବେଦ' ।

## କ୍ରାନ୍ତଦର୍ଶୀ ବିନୋବା

### ସର୍ବୋଦୟର ଚାରିସ୍ତମ୍ଭ

୧ । ହିଂସା ଉପରେ ବିଶ୍ୱାସ ଥିବା ଯାଏ ଦୁନିଆ ଆଗେଇ ପାରିବ ନାହିଁ ।

୨ । ଦଳଗତ ରାଜନୀତିରେ ବିଶ୍ୱାସ ଓ ତାକୁ ଆଶ୍ରା କରି ଯେଉଁ ଶାସନ ବ୍ୟବସ୍ଥା ଗଠିତ ହେବ, ତାହା ତିଷ୍ଠି ପାରିବ ନାହିଁ ।

୩ । ଜମିରେ ବ୍ୟକ୍ତିଗତ ମାଲିକାନା ତିଷ୍ଠିବ ନାହିଁ । ଜମି ଓ ସମ୍ପତ୍ତି ସମସ୍ତଙ୍କର ହେବା ଆବଶ୍ୟକ ।

୪ । ଜାତିଭେଦ, ଧର୍ମଭେଦ ମାନିବା ଉଚିତ ନୁହେଁ ।

## ଅନୁରୋଧୀ ଓ ପ୍ରତିରୋଧୀ ପ୍ରେମ

ଯେ ଆମକୁ ଭଲ ପାଏ, ଆମେ ତାକୁ ଭଲ ପାଉ । ଏହାଦ୍ୱାରା ପ୍ରେମର ବଳ ବଢ଼ିପାରେ ନାହିଁ । ପଶୁ ମଧ ଏହା ହିଁ କରେ । ଏହା ଅନୁରୋଧୀ ପ୍ରେମ । ପ୍ରେମରୁ ପ୍ରେମ, ଭୟରୁ ଭୟ ଜାତ ହେବାଟା ବୀଜ-ଫଳ-ନ୍ୟାୟ ପ୍ରକ୍ରିୟା । ମାତ୍ର ପ୍ରେମଶକ୍ତି ସେତିକିବେଳେ ପ୍ରକାଶ ପାଏ, ଯେତେବେଳେ କେହି ଆମ ପ୍ରତି ବିଦ୍ୱେଷ ପୋଷଣ କରୁଥିବା ସତ୍ତ୍ୱେ ଆମେ ତାକୁ ପ୍ରେମକରୁଁ । ଏହା ପ୍ରତିରୋଧୀ ପ୍ରେମ । ଦ୍ୱେଷର ପ୍ରତିଦାନରେ ଭଲ ପାଇବାର କଳା ଆମକୁ ଶିଖିବାକୁ ହେବ । ଏହା ହିଁ ପ୍ରେମଶକ୍ତି-ନିର୍ମାଣ କରିବାର ଉପାୟ ।

ବିଜ୍ଞାନ + ହିଂସା = ସର୍ବନାଶ

ବିଜ୍ଞାନ + ଅହିଂସା = ସର୍ବୋଦୟ

## ଯଜ୍ଞ

ସୃଷ୍ଟିରେ ଯେଉଁ କ୍ଷତି ଘଟୁଛି, ତାକୁ ପୂରଣ କରିବା ହିଁ ଯଜ୍ଞ । ହଜାର ହଜାର ବର୍ଷ ହେଲା ଆମେ ଜମି ଚଷଛୁଁ, ତାର କ୍ଷୟ ଘଟାଉଛୁଁ । ଯଜ୍ଞ କହୁଛି ପୃଥିବୀକୁ ତାର ଶକ୍ତି ଫେରାଇ ଦିଅ । ଜମି ଚଷ, ତାକୁ ଖରା ଖୁଆଅ, ତହିଁରେ ସାର ଦିଅ । ସୃଷ୍ଟିର କ୍ଷୟ ପୂରଣ କରିବା ହିଁ ଯଜ୍ଞର ଉଦ୍ଦେଶ୍ୟ । ଦ୍ୱିତୀୟ ଉଦ୍ଦେଶ୍ୟ ହେଉଛି ଆମେ ଯାହାକୁ ବ୍ୟବହାର କରୁଛୁଁ ତାହାର ଶୁଦ୍ଧିକରଣ । ଆମେ କୂଅକୁ ବ୍ୟବହାର କରିବା ଦ୍ୱାରା କୂଅ ପାଖ ଅପରିଛନ୍ନ ହୋଇଯାଉଛି । ତାହାକୁ ପରିଷ୍କାର କରିବା ଉଚିତ ।

ତୃତୀୟ କଥା ହେଲା କ୍ଷତିପୂରଣ କରିବା ସଙ୍ଗେ ସଙ୍ଗେ କିଛି ଉତ୍ପାଦନ କିଛି ନିର୍ମାଣ ମଧ କରିବା ଉଚିତ । ଆମେ ଲୁଗା ପିନ୍ଧୁଛୁଁ, ତେଣୁ ଅନ୍ନ ଭୋଜନ କରୁଛୁଁ । ତେଣୁ ସୂତା କାଟିବା, କପା, ଶସ୍ୟ ଉତ୍ପାଦନ କରିବା ମଧ ଯଜ୍ଞ । କର୍ତ୍ତବ୍ୟ-ଭାବନାରେ ଏହା କରିବା ଉଚିତ । ଏହା ପରୋପକାର ନୁହେଁ । ଆମେ ତ ଆଜନ୍ମରୁ ଋଣୀ । ସେହି ଋଣ ପରିଶୋଧ କରିବା ପାଇଁ ଆମେ ଯାହା କରିବା, ତାହା ହିଁ ଯଜ୍ଞ ।

## ଦାନ

ମା, ବାପା, ଗୁରୁ, ବନ୍ଧୁ – ଏମାନେ ସମସ୍ତେ ଆମ ପାଇଁ ପରିଶ୍ରମ କରନ୍ତି । ସମାଜର ଏ ଋଣ ସୁଝିବା ପାଇଁ ଦାନର ବ୍ୟବସ୍ଥା ହୋଇଛି । ଦାନର ଅର୍ଥ ହେଉଛି ସମାଜର ଋଣ ପରିଶୋଧ ନିମନ୍ତେ କରାଯାଇଥିବା ପ୍ରୟୋଗ । ଦାନର ଅର୍ଥ ପରୋପକାର ନୁହେଁ । ସମାଜଠାରୁ ମୁଁ ବହୁତ ସେବା ଗ୍ରହଣ କରିଛି । ମୁଁ ଏ ସଂସାରକୁ ଆସିଲାବେଳେ ଦୁର୍ବଳ ଓ ଅସହାୟ ଥିଲି । ଏ ସମାଜ ମୋତେ ଛୋଟରୁ ବଡ଼ କରିଛି । ସେଥିପାଇଁ ମୋର ସମାଜ-ସେବା କରିବା ଉଚିତ । ଅନ୍ୟଠାରୁ କିଛି ଗ୍ରହଣ ନ କରି କରାଯାଉଥିବା ସେବା ହେଉଛି ପରୋପକାର, ମାତ୍ର ଆମେ ତ ଅଞ୍ଜଳିପୂର୍ଣ୍ଣ କରି ନେଇ ସାରିଛୁ । ସମାଜର ଏ ଋଣରୁ ମୁକ୍ତ ହେବା ପାଇଁ ଯେଉଁ ସେବା କରାଯାଏ, ତାହା ହିଁ ଦାନ । ମନୁଷ୍ୟ ସମାଜକୁ ଆଗେଇ ନେବା ପାଇଁ ସାହାଯ୍ୟ କରିବା ହିଁ ଦାନ ।

## ତପ

ଏ ଶରୀର ମଧ୍ୟ ପ୍ରତିଦିନ କ୍ଷୟ ଲାଭ କରୁଛି; ଆମେ ଆମର ମନ, ବୁଦ୍ଧି, ଇନ୍ଦ୍ରିୟ ସମସ୍ତଙ୍କୁ ଖଟାଉଛୁ । ଏ ଶରୀରରୂପୀ ସଂସ୍ଥାରେ ଯେଉଁ ବିକାର, ଯେଉଁ ଦୋଷ ଉତ୍ପନ୍ନ ହେବ, ତାହାର ଶୁଦ୍ଧି ନିମନ୍ତେ ତପ ଶିକ୍ଷା ଦିଆଯାଇଛି । ସୃଷ୍ଟି, ସମାଜ ଓ ଶରୀର ଏ ତିନୋଟି ସଂସ୍ଥାର କାମ ଯେପରି ଭଲ ଭାବରେ ଚାଲିବ, ସେହିପରି ଆମର ଆଚରଣ ହେବା ଉଚିତ ।

# ଗ୍ରାମଦାନରୁ ରାଜ୍ୟଦାନ

ସ୍ୱରାଜ୍ୟ ପୂର୍ବରୁ ଗାନ୍ଧୀଜୀ ରାମରାଜ୍ୟର ପରିକଳ୍ପନା କରିଥିଲେ । ବିନୋବାଜୀ ଏବେ ତାକୁ ରାମରାଜ୍ୟ ରୂପରେ ଲୋକଙ୍କ ଆଗରେ ରଖିଛନ୍ତି । ଆଜି ଦେଶରେ ବେକାରୀ, ଆର୍ଥିକ ଅନାଟନ, ଶୋଷଣ ବିଶୃଙ୍ଖଳା ଓ ଅଶାନ୍ତି ଯେପରି ଭାବରେ ବଢ଼ି ଚାଲିଛି ତଦ୍ଦ୍ୱାରା ଏ ଦେଶର ଗଣତନ୍ତ୍ର ମୂଳପୋଛ ହୋଇଯିବାର ଭୟ ଦେଖାଯାଉଛି । ସାମ୍ରାଜ୍ୟବାଦ କବଳରୁ ନୂଆକରି ସ୍ୱାଧୀନତା ପାଇଥିବା ଏସିଆ ଓ ଆଫ୍ରିକା ଆମର ବନ୍ଧୁ ପଡୋଶୀ ଦେଶ ସେମାନଙ୍କର ଏହି ସବୁ ସମସ୍ୟାକୁ ସମାଧାନ କରି ନ ପାରିବାରୁ ସେଠାରେ ଗଣତନ୍ତ୍ର ଭୁଷୁଡ଼ି ପଡ଼ିଛି । ପାକିସ୍ତାନ କଥା ଏ ପ୍ରସଙ୍ଗରେ ଜଳ ଜଳ ଦେଖାଯାଉଛି । ମାତ୍ର ସୁଖର କଥା ଯେ ଭାରତବର୍ଷରେ ଗଣତନ୍ତ୍ର ଯେତେ ଦୋଷଯୁକ୍ତ ହେଲେ ହେଁ ଆଜି ସୁଦ୍ଧା ବଞ୍ଚି ରହିଛି । କିନ୍ତୁ ଜାତିଭେଦ, ଧନୀ ଗରିବର ଭେଦ ବୋଲି ଆର୍ଥିକ ଓ ସାମାଜିକ କ୍ଷେତ୍ରରେ ପ୍ରଚଳିତ ଶୋଷଣ ଓ ବିଷମତା ସବୁଦିନେ ଗଣତନ୍ତ୍ରକୁ ଏ ଦେଶରେ ବଞ୍ଚାଇ ପାରିବ ନାହିଁ ।

# ସବୁ ଲୁଣ ଲୋକଙ୍କର

## ଆଇଡ଼ିନ୍ ମିଶା ଲୁଣ କାହାର ସ୍ୱାର୍ଥରେ ?

୧. ଭାରତର ପ୍ରାୟ ସମସ୍ତ ରାଜ୍ୟରେ ସାଦା ସ୍ଥାନୀୟ ଲୁଣ ନିଷିଦ୍ଧ ହୋଇ ସାରିଲାଣି । ଦୂରଦର୍ଶନ, ଆକାଶବାଣୀ ଓ ଖବରକାଗଜ ବିଜ୍ଞାପନ ମାଧମରେ ଆଇଡ଼ିନ ମିଶା ଲୁଣର ବାହାନା ବାହାର କରି ସରକାର ଉପରେ ଚାପ ପକାଉଥିଲେ । ମନମୋହନ ସିଂହଙ୍କର ନୂଆ ଅର୍ଥନୀତି ଚାଲୁ ହେବାରୁ ସେମାନଙ୍କର ଦାବୀ ପୂରଣଟା ସହଜ ହୋଇଗଲା । ଏ ଯୋଜନା ପାଇଁ ୟୁନିସେଫ୍ ସଂସ୍ଥାର ପରାମର୍ଶ ବି ସୁବିଧାରେ ମିଳିଗଲା । ଏ ଏକ ବିଶ୍ୱ ସେବା ସଂସ୍ଥା । ଏହା ଶିଶୁ ଓ ବାଳୁତଙ୍କର ସେବା ନିମନ୍ତେ ରାଷ୍ଟ୍ର ସଂଘର ଆର୍ନ୍ତରାଷ୍ଟୀୟ ଜରୁରୀ ପାଣ୍ଠି । ତେଣୁ ଏହାର ପରାମର୍ଶକୁ ଲୋକେ ସହଜରେ ଉଚିତ ବୋଲି ଗ୍ରହଣ କରିନେବେ । ଏ ସଂସ୍ଥାର ଅସଲ୍ ଚରିତ୍ର ବିଷୟରେ ପରେ ଆଲୋଚନା କରିବା ।

ଏ କଥା ଠିକ୍ ଯେ ଦେହରେ ଆଇଡ଼ିନ୍ ଅଭାବ ହେଲେ ଗଳଗଣ୍ଡ ରୋଗ ହୁଏ । ମାତ୍ର ଏକଥା ମଧ ଜଳଜଳ ଦେଖାଯାଉଛି ଯେ ଭାରତର ଶତକଡ଼ା ୯୦ ଭାଗ ବା ଅଧିକ ଅଞ୍ଚଳର ଲୋକେ ହଜାର ହଜାର ବର୍ଷ ହେଲା ଟାଟା କମ୍ପାନୀର ଆଇଡ଼ିନ୍ ମିଶା ଲୁଣ ନ ଖାଉଥିଲେ ବି ଗାଁ ଗାଁରେ, ସହର ବଜାରରେ କିଛି କୋଟି କୋଟି ବା ଲକ୍ଷ ଲକ୍ଷ ଲୋକ ଗଳଗଣ୍ଡ ଗ୍ରସ୍ତ ହେଇ ବୁଲିବାର ଦେଖା ଯାଉନାହାନ୍ତି । ଏହାର କାରର ହେଲା ଯେ ଆମର ସମୁଦ୍ର ପାଣିରେ ଆଇଡ଼ିନ୍ ଅଛି ଓ ଯେତେ ଆଇଡ଼ିନ୍ ଲୋଡ଼ା ତାହା ଆମକୁ ଆଗେ ବ୍ୟବହାର କରି ଆସୁଥିବା ସାଦା ଲବଣରୁ ମିଳୁଛି । ତା' ଛଡ଼ା ମାଟିରେ ବି ଆଇଡ଼ିନ୍ ଅଛି ଓ ସେଥିରୁ ବି ପନିପରିବା ମାଧମରେ ମିଳୁଛି । ଭାରତରେ ଅଧିକାଂଶ ଅଞ୍ଚଳରେ ଯେ ଅଳ୍ପ କେତେକଙ୍କର ଗଳଗଣ୍ଡ ହୁଏ ତାହା ସେମାନଙ୍କର ଶରୀରର ଅନ୍ୟ କୌଣସି ଦୋଷ ଯୋଗୁଁ ତାହା ଆଇଡ଼ିନ୍ ଗ୍ରହଣ ନ କରି ପାରୁଥିବା ଯୋଗୁଁ ହୁଏ । କେବଳ ହିମାଳୟ ପର୍ବତମାଳାର ପାଦଦେଶରେ ତରାଇ ଅଞ୍ଚଳରେ ଗଳଗଣ୍ଡ ଏକ ମହାମାରୀ ରୂପେ ଦେଖାଯାଏ । ଏହାର କାରଣ ସେଠି ମୃତ୍ତିକାକ୍ଷୟ ଯୋଗୁଁ ଭୂମିରୁ ଆଇଡ଼ିନ୍ ଧୋଇଯାଇଛି । ବିହାର ଓ ଅନ୍ୟତ୍ର ଦୁଇତିନୋଟି ସ୍ଥାନରେ କିଛି ଏପରି ଅଞ୍ଚଳ ଅଛି । ମାତ୍ର ଏ ରୋଗରେ ସବୁ ମିଶି ଭାରତର ମୋଟ ଲୋକ ସଂଖ୍ୟାର ଶତକଡ଼ା ଦଶ ଭାଗରୁ ବି କମ୍ ଆକ୍ରାନ୍ତ । ଏତକ ଲୋକଙ୍କ ସ୍ୱାସ୍ଥ୍ୟରକ୍ଷା ପାଇଁ ସାରା ଭାରତର ଲୋକଙ୍କୁ ତିନିଚାରିଗୁଣା ଅଧିକ ଦାମ ଦେଇ ଆଇଡ଼ିନ୍ ମିଶା ଲୁଣ ଖାଇବାକୁ ବାଧ କରିବାର ଯୌକ୍ତିକତା କଣ ? ପୁରୀ

ଜିଲ୍ଲାରେ ଏକ ସମୟରେ ଫାଇଲେରିଆ ବା ବାତଜ୍ୱରର ପ୍ରାବଲ୍ୟ ଥିଲା । ତା' ବୋଲି କଣ ସାରାଭାରତର ଲୋକଙ୍କୁ ବାତଜ୍ୱରର ଔଷଧ ଖାଇବାକୁ ବାଧ୍ୟ କରିବା ଉଚିତ ହୋଇଥାନ୍ତା ?

୪. ଗଳଗଣ୍ଡ ବ୍ୟାପକ ଥିବା ଅଞ୍ଚଳରେ ମଧ୍ୟ ସମସ୍ତଙ୍କୁ ବାଧ୍ୟ କରି ଆଇଡ଼ିନ୍ ଯୁକ୍ତ ଲୁଣ ଖୁଆଇବାର ଯୌକ୍ତିକତା ନାହିଁ । ଲୋକଙ୍କ ଭିତରେ ପ୍ରଚାର କଲେ ସେମାନେ ବଳେ ଆଇଡ଼ିନ୍ ମିଶା ଲୁଣ ଖାଇବେ । ମେଲେରିଆ ହେଲେ ନେପାକ୍ରିନ୍ କି କୁଇନାଇନ୍ ଖାଇବାକୁ ଲୋକଙ୍କୁ ବାଧ୍ୟ କରିବାକୁ କେଉଁଠି ଆଇନ୍ ବା ହୁକୁମନାମା ଜାରି ହୋଇଛି ? ଓଲଟା ସରକାରଙ୍କର ଅଯୋଗ୍ୟତା ଯୋଗୁଁ ମେଲେରିଆ ରୋଗୀ ହଜାର ଯାକ ଅଣ୍ଡାଳୀ ହେଲେ ବି ସହଜରେ ଔଷଧ ପାଉନାହାନ୍ତି । ଭେଜାଲ ଔଷଧ ବଜାରଯାକ ଛାଇ ଯାଉଛି ।

୫. ଆଇଡ଼ିନ୍ ମିଶା ଲୁଣକୁ ବାଧ୍ୟତାମୂଳକ କରିବା ସପକ୍ଷରେ କେହି ଜଣାଶୁଣା ଚିକିତ୍ସକ ବା ବୈଜ୍ଞାନିକ ମତ ଦେଇଥିବାର ଜଣା ନାହିଁ । ଭାରତ ସରକାରଙ୍କର ସମାଜ କଲ୍ୟାଣ ମନ୍ତ୍ରାଳୟ ଦ୍ୱାରା ସାହାଯ୍ୟ ପ୍ରାପ୍ତ Nutrition Foundation of India ଭାରତର ପୁଷ୍ଟି ସଂସ୍ଥାନର ଏକ ଅଧିକୃତ ଅନୁସନ୍ଧାନର ରିପୋର୍ଟରେ ଆଇଡ଼ିନ୍‌ଯୁକ୍ତ ଲୁଣକୁ ବାଧ୍ୟତାମୂଳକ କରିବା ବିରୋଧରେ ମତ ଦିଆ ହୋଇଛି । ଏ ରିପୋର୍ଟ ୧୯୮୩ରେ ଦାଖଲ ହେଇଥିଲା । ଏ ସଂସ୍ଥାର ଅଧ୍ୟକ୍ଷ ଡ: ସି. ଗୋପାଳନ୍ ମଧ୍ୟ ଏହି ମତ ଦେଇଛନ୍ତି ।

୬. ଏହା ବିରୋଧରେ ସାରା ଭାରତର ପ୍ରାୟ ଶହେ ବିଶିଷ୍ଟ ବୁଦ୍ଧିଜୀବୀ, ସମାଜସେବୀ, ସାମ୍ବାଦିକ, ବୈଜ୍ଞାନିକ, ଚିକିତ୍ସକଙ୍କ ଦସ୍ତଖତରେ ଆଇଡ଼ିନ୍ ମିଶା ଲୁଣକୁ ବାଧ୍ୟମୂଳକ ନ କରିବା ପାଇଁ ଅନୁରୋଧ କରି ଏକ ଆବେଦନ ବର୍ଷକ ତଳେ ପ୍ରଧାନମନ୍ତ୍ରୀଙ୍କୁ ଦିଆଯାଇଥିଲା । ଏଥିରେ ଓଡ଼ିଶାର ୨୬ ଜଣ ଖ୍ୟାତନାମା ଚିକିତ୍ସକଙ୍କର ସ୍ୱାକ୍ଷର ରହିଛି । ଏମାନଙ୍କର ନାମ ଅନ୍ୟତ୍ର ଦିଆଯାଇଛି ।

୭. ମାତ୍ର ଏ ଆବେଦନର କୌଣସି ଉତ୍ତର ମିଳି ନାହିଁ । ବଡ଼ ବଡ଼ କମ୍ପାନୀମାନଙ୍କ ହାତକୁ ଲୁଣର ଏକଚାଟିଆ କାରବାର ଟେକି ଦେବା ଯେତେବେଳେ ସ୍ଥିର ହୋଇଛି ସେତେବେଳେ ଲୋକମତକୁ କିଏ ପରୱାୟ କରୁଛି ?

୮. ୟୁନିସେଫ୍ ତ ନାମକୁ ବିଶ୍ୱ ସେବା ସଂସ୍ଥା । ମାତ୍ର ଏହା କାର୍ଯ୍ୟତଃ ପାଶ୍ଚାତ୍ୟ ପୁଞ୍ଜିବାଦୀମାନଙ୍କର ହାତବାରସୀ ରୂପେ କାମ କରିଥାଏ । ଏବେ ଆମ ଦେଶର ଶିକ୍ଷା ବ୍ୟବସ୍ଥାକୁ କବଳିତ କରିବା ପାଇଁ ସାମ୍ରାଜ୍ୟବାଦୀ ରାଷ୍ଟ୍ରମାନଙ୍କ ପକ୍ଷରୁ ଏକ

ଉଦ୍ୟମ ସଫଳ ହେଲାଣି । ଏହାଦ୍ୱାରା ସେମାନଙ୍କ ଦ୍ୱାରା ପିଲାଟି ଦିନରୁ ଏ ଦେଶବାସୀଙ୍କ ଭିତରେ ଖାଉଟି ସଂସ୍କୃତି ଭରି ଦେଇ ହେବ ଓ ଏ ଦେଶରେ ଏମାନଙ୍କର ଲକ୍ଷ କୋଟି ଟଙ୍କାର ମାଲ କାଟତିର ବଜାର ଖୋଲିବ । ସେଥିରେ ବି ୟୁନିସେଫ୍ ନାଟର ଗୋବର୍ଦ୍ଧନ । ତାରି ଦ୍ୱାରା ଆମ ସରକାରକୁ ସବୁ 'ସତ୍' ପରାମର୍ଶ ଦିଆଯାଉଛି ଓ ଶିକ୍ଷା ପରିଚାଳନାରେ ସେଇ ମୁଖ୍ୟ ଦାୟିତ୍ୱ ନେବାକୁ ଯାଉଛି ।

ଏ ୟୁନିସେଫ୍‌ର କାରସାଦୀର ଗୋଟାଏ ଉଦାହରଣ ଦିଏ । ଅନେକ ବର୍ଷ ତଳେ ୟୁନିସେଫର ଖିଆଲ ହେଲା ଯେ ଆଫଗାନସ୍ତାନର ଲୋକେ ପୁଷ୍ଟିକର ଖାଦ୍ୟ ଖାଉ ନାହାନ୍ତି, ସେମାନଙ୍କୁ କ୍ଷୀର ପିଇବାର ଅଭ୍ୟାସ କରାଇବାକୁ ହେବ । ସେଥିପାଇଁ ଏକ ତଥ୍ୟମୂଳକ ଚଳଚିତ୍ର ପ୍ରସ୍ତୁତ କରିବା ପାଇଁ ବିଶିଷ୍ଟ ଲେଖକ, ସାମ୍ବାଦିକ ଓ ରାଜନୀତିକ କର୍ମୀ ରମେଶ ଥାପରଙ୍କୁ ଏ ସଂସ୍ଥା ଅନୁରୋଧ କଲେ । ସେ ସେଥିପାଇଁ ଆଫଗାନିସ୍ଥାନ ଗଲେ ଓ ସେଠି ଗାଁ ଲୋକେ କିପରି ଚଳନ୍ତି, କଣ ଖାନ୍ତି ତାହା ଦେଖିବା ପାଇଁ ଗାଁମାନଙ୍କୁ ବୁଲିଗଲେ । ସେଠି ଦେଖିଲେ ଯେ ଲୋକେ ଖଣ୍ଡେ ନାନ୍ ରୁଟିରେ ମୁଣ୍ଡାଏ ଖାଣ୍ଟି ପନୀର ବା ଛେନା ଦେଇ ସେଥିରେ ଦୁଇ ତିନି ମୁଠା ପେସ୍ତା ବାଦାମ, କିସମିସ୍ ଆଦି ପକେଇ ତାକୁ ଖାଉଛନ୍ତି । ସେ ତ ଦେଖି କାବା ! ଏତେ ପୁଷ୍ଟିକର ବହୁମୂଲ୍ୟ ଖାଦ୍ୟ ଅନ୍ୟତ୍ର ଧନୀ ଲୋକଙ୍କୁ ବି ଦୁର୍ଲଭ । ଏମାନଙ୍କୁ ସୁଷମ ପୁଷ୍ଟିକର ଖାଦ୍ୟ ଖାଇବାକୁ ଆମେ କଣ ଶିଖାଇବୁ ? ସେଠୁ ଖୋଳତାଡ଼ କରିବାରୁ ଜଣା ପଡ଼ିଲା ଯେ ଟିଣ କ୍ଷୀର ବେପାର କରୁଥିବା ଆମେରିକା ଓ ୟୁରୋପର କମ୍ପାନୀମାନଙ୍କର ବଜାର ସୃଷ୍ଟି କରିବା ପାଇଁ ଏ ଏକ ଚକ୍ରାନ୍ତ ୟୁନିସେଫ୍ ଦ୍ୱାରା କାର୍ଯ୍ୟକାରୀ କରାଯାଉଥିଲା । ଇଏ ହେଉଛି ସେ ସଂସ୍ଥାର ଅବସ୍ଥା ।

୧୦. ଭାରତରେ ଯେ କେତେ ଲକ୍ଷ ଗୁଣ ଚାଷୀ ମୂଲିଆ ଓ ଛୋଟ ବେପାରୀ ଲୁଣ ମରା ଉପରେ ନିର୍ଭର କରି ପେଟ ପୋଷନ୍ତି ତାର ସଠିକ୍ ହିସାବ ନାହିଁ । ଏ ସମସ୍ତଙ୍କ ଧନ୍ଦା ବୁଡ଼ିବା ଆରମ୍ଭ ହେଲାଣି । ବଡ଼ ବଡ଼ କମ୍ପାନୀମାନେ କାରଖାନାମାନଙ୍କରେ ଲୁଣ ତିଆରି କରିବେ ସେଥିରେ ଏହାର ଦଶ ଭାଗ ଲୋକଙ୍କୁ କାମ ମିଳିବ କି ନାହିଁ ସନ୍ଦେହ । ବିଦେଶରୁ ବି ଲୁଣ ଆମଦାନୀ ହେବ, ଯେମିତି ବର୍ତ୍ତମାନ ଗହମ ଓ ଚିନିର ଅଭାବ ଦେଶରେ ନ ଥିଲେ ବି ସେସବୁ ବିଦେଶରୁ ଆମଦାନୀ ହେଉଛି । ଏହାଛଡ଼ା ଭାରତର ନବେ କୋଟି ଲୋକ ତିନିଚାରି ଗୁଣା ଅଧିକ ଦାମ୍ ଦେଇ କମ୍ପାନୀ ଲୁଣ କିଣିବାକୁ ବାଧ୍ୟ ହେବେ । ହାତକୁ ଏକଚାଟିଆ କାରବାର ଆସିଗଲେ ଏ ଦାମ୍ ଆହୁରି ବି ବଢ଼ିବା ନିଶ୍ଚିତ ।

୧୧. ଏବେ ନୂଆ ଆର୍ଥିକ ନୀତି ନାଁରେ କୋଟି କୋଟି ଗରୀବ ଲୋକଙ୍କ ଦାନା

ମାରି ମୁଷ୍ଟିମେୟ ଦେଶୀ ଓ ବିଦେଶୀ ପୁଞ୍ଜିପତିଙ୍କୁ ପୋଷିବାର ଯେଉଁ ଷଡ଼ଯନ୍ତ୍ର ଚାଲିଛି ଏ ଆଇଡ଼ିନ୍ ମିଶା ଲୁଣ ପ୍ରଚଳନ ମଧ୍ୟ ତାହାରି ଏକ ଅଂଶ । ଏହାକୁ ଅଙ୍କାମୀ କରିବାକୁ ହେବ । ଏହା ବିରୋଧରେ ସତ୍ୟାଗ୍ରହର ପ୍ରସ୍ତୁତି ଚାଲିଛି । ଲୋକେ ସରକାରର ଆଇନକୁ ବେଖାତିର କରି ଲୁଣ ମାରିବେ, ବିକିବେ ଓ ଖାଇବେ, ସରକାର ଯେତେ ଯାହା ଦଣ୍ଡ ଦେଉ ପଛକେ । ଏକ ସମୟରେ ଲବଣ ସତ୍ୟାଗ୍ରହ ପ୍ରବଳ ପରାକ୍ରାନ୍ତ ବ୍ରିଟିଶ ସାମ୍ରାଜ୍ୟର ଚେର ହୁଗୁଳା କରି ଦେଇଥିଲା । ଏବେ ଦେଶୀ ବିଦେଶୀ ପୁଞ୍ଜିପତି ଓ ସରକାରଙ୍କ ମେଣ୍ଟ ଆମକୁ ଯେଉଁ ନୂଆ ଗୋଲାମୀ ଭିତରକୁ ଠେଲି ଦେଇଛି ସେଥିରୁ ମୁକ୍ତିର ବାଟ ହୁଏତ ଏଇ ଦ୍ୱିତୀୟ ଲବଣ ସତ୍ୟାଗ୍ରହ ଫିଟେଇବ ।

("ସବୁ ଲୁଣ ଲୋକଙ୍କର"-ପ୍ରକାଶକ, ଶିକ୍ଷାସନ୍ଧାନ, ଭୁବନେଶ୍ୱର,୨୦୦୨(୧୯୯୫)

## ଦିବ୍ୟ ଦୀପାବଳୀ

ଏ ଦେହ ଏତେ ତୁଚ୍ଛ କିନ୍ତୁ ଏହାର ମୂଲ୍ୟ ବହୁତ । କାରଣ ଏହା ଆତ୍ମାର, ଆମେ ଉପଲବ୍ଧି କରି ପାରିଲେ ସତ୍ୟନାରାୟଣ ପରମାତ୍ମାଙ୍କ ନିବାସ ସ୍ଥାନ । ଏ ବିଚାର ଆମ ମନରେ ଦୃଢ଼ ହେଲେ ଏ ଦେହଟାକୁ ଅହଂକାର ପାତ୍ର ମଣିବାକୁ ଆମେ ଭୁଲିଯିବୁ । ଆମେ ଯଦି ଆକାଶ ସହିତ ଓତଃପ୍ରୋତ ହୋଇ ତାହାର ମହିମା ହୃଦୟଙ୍ଗମ କରିବୁ ତେବେ ନିଜର ତୁଚ୍ଛତା ଆହୁରି ବେଶୀ ଉପଲବ୍ଧି କରି ପାରିବୁ ଏବଂ ଆମର ସବୁ ଅହଂକାର ଉଭେଇ ଯିବ । ଆକାଶରେ ସୂର୍ଯ୍ୟନାରାୟଣ ଯଦି ଦିନକ ପାଇଁ ତାଙ୍କର ଅନନ୍ତ ତପଶ୍ଚର୍ଯ୍ୟା ବନ୍ଦ କରି ଦେବେ ତେବେ ଆମେ ନାଶ ଯିବୁ । ଚନ୍ଦ୍ର ତାଙ୍କ ଶୀତଳ କିରଣ ନ ଢାଳିଲେ ଆମ ଦଶା କ'ଣ ହେବ ? ତେଣୁ ଆମେ ଏତକ ଅନୁମାନ କରି ପାରିବା ଯେ ଆକାଶରେ ଯେଉଁ ଅସଂଖ୍ୟ ତାରକାରାଜି ଆମେ ଦେଖି ପାରୁଛୁ, ଏ ଜଗତକୁ ଚଳାଇବାରେ ସେଗୁଡ଼ିକଙ୍କର ମଧ୍ୟ ହାତ ଅଛି । ଏ ବିଶ୍ୱରେ ସବୁ ଜୀବ, ସବୁ ପଦାର୍ଥ ସହିତ ଆମର ଘନିଷ୍ଠ ସମ୍ପର୍କ ରହିଛି । ଆମେ ଏକ ଅପରର ସାହାଯ୍ୟରେ ବଞ୍ଚିଛୁ । ସେଥିପାଇଁ ଆମର ଆଶ୍ରୟଦାତା ଏ ଗ୍ରହନକ୍ଷତ୍ରଙ୍କ ସହିତ ଆମେ ଅଳ୍ପେ ବହୁତେ ପରିଚିତ ହେବା ଉଚିତ ।

ଆକାଶ ଓ ଆମ ଭିତରେ ଆମେ ଯେତେବେଶୀ ଅନ୍ତରାୟ ସୃଷ୍ଟି କରୁ ଆମ ଦେହ, ମନ ଓ ଆତ୍ମାର ଆମେ ଯେ ସେତିକି କ୍ଷତି କରୁ, ଏ ବିଷୟରେ କୌଣସି ସଂଦେହ ନାହିଁ । ଆମେ ଯଦି ସ୍ୱାଭାବିକ ପ୍ରାକୃତିକ ଜୀବନ କଟାଉଥାନ୍ତେ ତେବେ

ଆକାଶତଳେ ଚବିଶ ଘଣ୍ଟା ରହୁଥାନ୍ତୁ । ଏତେ ଦୂର କରି ନ ପାରିଲେ ଅନ୍ତତଃ ଯେତେ ବେଶୀ ସମୟ ମୁକ୍ତ ଆକାଶତଳେ ରହିପାରିବୁ, ରହିବା ଦରକାର ।

## ଅମୃତ ଅନୁଭବ

ଆଉ ଥରେ ଦେଖିଲି ଗୋଟାଏ ପ୍ରଶସ୍ତ ଘରେ ଧଳା ଚାଦର ଗଦି ଉପରେ ପଡ଼ିଛି । ଦୁଇଜଣ ବୃଦ୍ଧ ତକିଆଁକୁ ଆଉଜି କଥାବାର୍ତ୍ତା ହେଉଛନ୍ତି । ସେ ଦୁହେଁ ଥିଲେ ମଧୁସୂଦନ ଦାସ ଓ ମୋହନ ଦାସ କରମଚାନ୍ଦ ଗାନ୍ଧୀ । ପରବର୍ତ୍ତୀ କାଳରେ ଜାଣିଲି ମିଷ୍ଟର ଦାସ ସେଦିନ ମହାତ୍ମା ଗାନ୍ଧୀଙ୍କୁ ହାତ ଆଙ୍ଗୁଳିର କାର୍ଯ୍ୟ ସହିତ ମସ୍ତିଷ୍କ ବା ବୁଦ୍ଧିବୃତ୍ତିର ବିକାଶର କିପରି ସମ୍ବନ୍ଧ ରହିଛି ତାହା ବୁଝାଇ ଥିଲେ ଏବଂ ଗାନ୍ଧିଜୀ ମଧ୍ୟ ମିଷ୍ଟର ଦାସଙ୍କର ଏହି ସିଦ୍ଧାନ୍ତ କଥା ଲେଖିଛନ୍ତି ଓ ଏକାଧିକ ସଭାରେ କହିଛନ୍ତି ।

ମୋ ଜେଜେ ମିଷ୍ଟର ଦାସଙ୍କର ଜୁନିଅର ଥିଲେ ଏବଂ ଏକଦା ତାଙ୍କର ଦକ୍ଷିଣ ହସ୍ତ ଥିଲେ । ପରେ ଦୁହିଁଙ୍କ ମଧ୍ୟରେ ମତାନ୍ତର ଘଟିଥିଲା । କିନ୍ତୁ ଜେଜେ ଯେତେବେଳେ ଗୋପାଳବଲ୍ଲଭଙ୍କ ଝିଅ ମୋ ବୋଉକୁ ବୋହୂ କରିବା ପାଇଁ ଆଗ୍ରହୀ ହେଲେ ମିଷ୍ଟର ଦାସ ସେ କଥା ଶୁଣି ଅନୁଜଙ୍କୁ କହିଲେ - ଗୋକୁଳାନନ୍ଦ ସଙ୍ଗେ ମୋର ମତାନ୍ତର ହେଲେ କ'ଣ ହେଲା ? ତା ପୁଅ ସୁପୁତ୍ର । ତୁ ସେଠି ବନ୍ଧୁଘର କର ।

୧୯୩୦ ରେ ବୋଉକୁ ବ୍ରିଟିଶ ସରକାର ରାତି ଅଧରେ ଗିରଫ କରିବାରୁ ମିଷ୍ଟର ଦାସ ଉତ୍ତେଜିତ ହୋଇ ବଡ଼ଲାଟଙ୍କ ନିକଟରେ ଅଭିଯୋଗ କରିବାକୁ ବାହାରିଲେ । ସ୍ୱାମୀ ବିଚିତ୍ରାନନ୍ଦ ଦାସ ତାଙ୍କୁ ସେଥିରୁ ନିବର୍ତ୍ତାଇ ଥିଲେ । ମୋ ଆଈ ଯେତେବେଳେ ତାଙ୍କ ବିକ୍ଷୁବ୍ଧ ଅନ୍ତରକୁ ଶାନ୍ତ କରିବା ପାଇଁ କୋଠିକି ଗଲେ ମିଷ୍ଟର ଦାସ କହିଲେ - "ବେଲୁ ଏକି ବାଟ ଧରିଛି ? କାହା ଝିଅ, କାହା ବୋହୂ ! ତୁମେ ତାକୁ ଏଥିରୁ ନିବର୍ତ୍ତାଅ ।" ଆଈ କହିଲେ - "ସେ ତା ସ୍ୱାମୀର ଅନୁଗାମିନୀ ହୋଇଛି, ମୁଁ କ'ଣ କହିବି ?" ମିଷ୍ଟର ଦାସ ଉତ୍ତେଜିତ ହୋଇ କହିଲେ - "ତା ସ୍ୱାମୀ କଣ ତା ମାଆ ଠାରୁ ବଡ଼ ?"

ପିଲାଦିନର ଏହି ରହସ୍ୟାବୃତ ବ୍ୟକ୍ତିତ୍ୱର ମହନୀୟତା ଉପଲବ୍ଧି କରିବାର ବୟସ ହେଲା ବେଳକୁ ସେ କାଳକବଳିତ ହୋଇ ସାରିଥିଲେ ।

x x x x x

(ଯେତେବେଳେ ଅନ୍ନପୂର୍ଣ୍ଣାଙ୍କୁ ୧୪ ବର୍ଷ ସେ ବେଆଇନ୍ ଲୁଣ ବିକୁଥିବା ଅବସ୍ଥାରେ ଗିରଫ ହୋଇ ଜେଲ୍ ଗଲେ । କଟକ ଜେଲ୍‌ର ୧୨ ନଂ ୱାର୍ଡ଼୍‌ର ଗୋଟିଏ ଅଭିଜ୍ଞତା)

ଏହିପରି ତୀର୍ଥବାସ କଲା ପରେ ଦିନେ ଖରାବେଳେ ପାଚେରୀ ଦ୍ୱାରପଟୁ ଡାକ ଶୁଭିଲା - "ଜମାଦାରଣୀ ! କରୁଣା ଦେବୀ, ଅନ୍ନପୂର୍ଣ୍ଣା ଚୌଧୁରୀ କୋର୍ଟକୁ ଯିବେ ।" ପୁଣି ନୂଆ ଅଭିଜ୍ଞତା ହାସଲ ହେବ ବିଚାରି ଛାତି ଦୁଲୁକି ଉଠିଲା । କରୁଣା ଓ ମୁଁ ଜମାଦାରଣୀ ସାଙ୍ଗରେ ଜେଲ୍ ଅଫିସ୍ ଆଡ଼କୁ ଗଲୁ ।

ଜେଲ୍ ଅଫିସ୍‌କୁ ଯାଇ ଦେଖିଲୁ ସେ ଅଫିସ୍‌ଟା କୋର୍ଟ ପାଲଟି ଯାଇଛି । ଶ୍ରୀଯୁକ୍ତ ଆୟାର୍ ନାମରେ ଜଣେ ଜଣେ ଫାଷ୍ଟକ୍ଲାସ୍ ମାଜିଷ୍ଟ୍ରେଟ୍ ଜେଲର ସାହେବଙ୍କ ଚଉକୀ ଅଧିକାର କରି ବସିଛନ୍ତି । କୋର୍ଟ ଇନିସ୍‌ପେକ୍ଟର ମହୋଦୟ ଶ୍ମଶ୍ରୁବହୁଳ ପ୍ରଶାନ୍ତ ବଦନରେ ନଥିପତ୍ର ଧରି ଦଣ୍ଡାୟମାନ । ସାକ୍ଷୀ ଦୁଇ ତିନିଜଣ ଗରୁଡ଼ ପରି କରଯୋଡ଼ି ଛିଡ଼ା ହୋଇଛନ୍ତି । ତାଙ୍କ ଭିତରୁ ଜଣଙ୍କୁ ଚିହ୍ନିଲୁ । ସେ ସ୍ୱରାଜ ମେଡ଼ିକାଲ୍ ହଲ୍ ଆଗରେ ଆମକୁ ଲୁଣ ମାଗିଥିଲେ । ଶ୍ରୀ ଆୟାରଙ୍କ ମୁଣ୍ଡ ଉପରେ ଟଣାପଙ୍ଖା ଚାଲିଥାଏ । ସେଇ ଘରର ଦ୍ୱାର ପାଖକୁ ଖଣ୍ଡେ ଚାଖଣ୍ଡେ ଓସାରର ଘୋଡ଼ିଆ ପଡ଼ିଥିଲା । ହାକିମଙ୍କ ଆଜ୍ଞାରେ ଆମେ ଦୁହେଁ ସେହି ଘୋଡ଼ିଆ ଉପରେ ବସିଲୁ । ସାକ୍ଷୀ ସାକ୍ଷ୍ୟ ଦେଲେ ଯେ ଆମେ ଦୁହେଁ ବେଆଇନ୍ ଲୁଣ ବିକୁଥିଲୁ । ହାକିମ ଦକ୍ଷିଣ ଭାରତୀୟ । ତେଣୁ ତାଙ୍କୁ ଶୋଭା ଦେବା ଭଳି ଓଡ଼ିଆରେ ସେ ମୋତେ ପଚାରିଲେ - "କଂଗ୍ରେସଟା ବେଆଇନ୍, ଏହା ତୁ ଜାଣୁ ତ ?" ମୁଁ ଉତ୍ତେଜିତ ହୋଇ କହିଲି - "ବ୍ରିଟିଶ୍ ସରକାରଙ୍କ ଶାସନଟା ହିଁ ବେଆଇନ୍ ବୋଲି ମୁଁ ଜାଣେ । କଂଗ୍ରେସ ବେଆଇନ୍ ନୁହେଁ ।"

x x x x x

(ଚୀନ୍ ଭାରତ ଆକ୍ରମଣ କରୁଥିବା ସମୟର କଥା)

ଆଉ ଗୋଟିଏ ଆଲୋଚନା ସଭାରେ ଜଣେ ବିଲମୁଲିଆ କହିଲେ - "ଆମର ଚୀନ ଆଇଲେ କେତେ, ଋଷିଆ ଅଇଲେ କେତେ ? ଜଣେ ଚାଷୀ ତା' ବଳଦକୁ କହିଲା - ବେଗି ବେଗି ଚାଲ । ଚୋର ଆସୁଛି । ତୋତେ ନେଇଯିବ । ବଳଦ କହିଲା - ମୋ ପାଇଁ ତୁ ଓ ଚୋର ସମାନ । ତୁ ମୋତେ ହଳରେ ଯୋଚୁଛୁ, ପାଞ୍ଚଣରେ ଅଡ଼ଉଛୁ । ଚୋର ମଧ ମୋତେ ସେଇତା କରିବ । ଆମେ ମଳିମୁଣ୍ଡିଆ ସେହି ବଳଦ ପରି । ଯାଙ୍କ ପାଖରେ ଖଟି ମୂଲ ନେଉଛୁ, ତାଙ୍କ ପାଖରେ

ଝଟି କରି ମୂଇ ନେବୁ । ଆମକୁ ହାତ ଚକିରେ ବସାଇ କେହି ଖାଇବାକୁ ଦେଉ ନାହାନ୍ତି କି ଦେବେ ନାହିଁ ।”

ସବୁଠାରୁ ଟାଣୁଆ ପାହାର ଆମ ଉପରେ ବସିଲା ବାଲିଅନ୍ତା ରହଣୀରେ । ବାଲିଅନ୍ତାରେ ନିକୁଞ୍ଜ ବିହାରୀଙ୍କ ମନ୍ଦିର ଦ୍ୱାର ଗାନ୍ଧିଜୀ ୧୯୩୪ ରେ ହରିଜନଙ୍କ ପାଇଁ ଖୋଲିଦେଇଥିଲେ । ସେଥିପାଇଁ ସ୍ମରଣ ଯାତ୍ରାରେ ଯିବାବେଳେ ସେହି ମନ୍ଦିରର ମୁଖଶାଳାରେ ରହିବାକୁ ଭାରି ଭଲ ଲାଗେ । ନଦୀରେ ଗାଧୋଇ ଆସି ଦେବଦର୍ଶନ କରିବାର ଆନନ୍ଦଟି ବର୍ଷକରେ ଥରେ ଏଇଠି ଉପଭୋଗ କରିବାକୁ ମିଳେ । ଅମେ ନଦୀରେ ଗାଧେଇବା ବେଳେ କେତେଜଣ ମୂଲିଆଣୀ ଆମ ସାଙ୍ଗରେ ଗାଧୋଇଲେ । ସେମାନେ ଭୋଇ ସାହିର ବୋହୁଝିଅ । ଗାଧୋଇ ସାରି ସେମାନଙ୍କୁ ଆମେ କହିଲୁ ଚାଇ – ନିକୁଞ୍ଜବିହାରୀଙ୍କୁ ଦର୍ଶନ କରିବା । ସେମାନେ ମୁହୂର୍ତ୍ତେ ବିଳମ୍ବ ନ କରି ଜବାବ ଦେଲେ – “ସେ ଠାକୁର ଯାହାକୁ ଭଲ ଖାଇବାକୁ ଭଲ ପିନ୍ଧିବାକୁ ଦେଇ ଭଲରେ ରଖିଛି, ସେହିମାନେ ଯାଆନ୍ତୁ ସେ ଠାକୁର ଦର୍ଶନ କରିବେ । ଆମେ ମୁଣ୍ଡଝାଳ ତୁଣ୍ଡରେ ମାରି ପେଟ ପୋଷୁ । ଆମର ସେ ଠାକୁର ଦର୍ଶନ ଦରକାର ନାହିଁ ।” ଏ କଥା ଶୁଣି ମଥାରେ ବଜ୍ରପାତ ହେଲା ପରି ଲାଗିଗଲା । ଅଦ୍ୱୈତ, ଅଭେଦ, ସମତ୍ୱ ଆଦି ହିନ୍ଦୁଧର୍ମର ମୂଳତତ୍ତ୍ୱ ଯେତେ ବୟାନ କଲେ କ’ଣ ହେବ ? ଆମ ଆଚରଣରେ ଯେଉଁ ବିଷମତା, ଭେଦ ଓ ଦ୍ୱୈତଭାବନା ପୂରି ରହିଛି ତାହାରି ଯୋଗୁ ଦେଶର ଗରିବ ଲୋକେ ଧର୍ମ ପ୍ରତି କିପରି ବୀତଶ୍ରଦ୍ଧ ହେଉଛନ୍ତି ତାହାର ଉଦାହରଣ ଉପରୋକ୍ତ ଉତ୍ତରରୁ ମିଳିଲା ।

x x x x x

(କାମିନୀ ନରକର ଦ୍ୱାର ?)

ବିନୋବାଜୀଙ୍କର ଗୋଟିଏ ଜୀବନ ଦର୍ଶନ ମୋତେ ଗଭୀର ଭାବରେ ପ୍ରଭାବିତ କଲା ଏବଂ ଗାନ୍ଧୀ-ଜୀବନ ଦର୍ଶନକୁ ସହଜ ବୋଧଗମ୍ୟ କରାଇ ଦେଲା । ନାରୀ ନରକର ଦ୍ୱାର, କାମିନୀ କାଞ୍ଚନ ପୁରୁଷକୁ ପତନ ଆଡ଼କୁ ନେଇ ଯାଆନ୍ତି, ମୋକ୍ଷକାମୀ ବା ଆଧ୍ୟାତ୍ମିକ ସାଧନାରେ ବ୍ରତୀ ପୁରୁଷମାନେ ନାରୀଠାରୁ ଦୂରରେ ରହିବା ଉଚିତ୍ ବୋଲି ଆଧ୍ୟାତ୍ମିକ ସାଧନା କ୍ଷେତ୍ରରେ ଯେଉଁ ଆପ୍ତବାକ୍ୟମାନ ରହିଛି ତାହା ନାରୀ ମନରେ ସୁଦ୍ଧା ନିଜ ବାବଦରେ ଘୃଣା ସୃଷ୍ଟି କରୁଥିବାର ମୁଁ ଅନୁଭବ କରିଛି ଏବଂ ନାରୀ ଜାତି ମଧ୍ୟରେ ସୁଦ୍ଧା ଏ ବାବଦରେ ଏକ ଅପରକୁ ଅପରାଧୀ କରିବାର ବୃତ୍ତି ଦେଖିଛି । ଗାନ୍ଧୀଜୀ ଦୃଢ଼ ଭାବରେ ଏହି ବିଚାର ଉପରେ କୁଠାରଘାତ

କରିଥିଲେ । ଉଦାହରଣ ସ୍ୱରୂପ, ଲକ୍ଷ୍ମଣଙ୍କର ବ୍ରହ୍ମଚର୍ଯ୍ୟ ଯେତେବେଳେ "ନାହଂ ଜାନାମି କେୟୁରେ ନାହଂ ଜାନାମି କୁଣ୍ଡଳେ ନୂପୁରେ ତ୍ୱଭିଜାନାମି ନିତ୍ୟଂ ପାଦାଭି ବନ୍ଦନାତ୍" ଉଚ୍ଚ ପ୍ରଶଂସିତ ହେଉଥିଲା ସେତେବେଳେ ଗାନ୍ଧିଜୀ ସେ ପ୍ରକାର ବ୍ରହ୍ମଚର୍ଯ୍ୟକୁ ପୂରାପୂରି ନାପସନ୍ଦ କରିଥିଲେ । ହାତ ପୋଡ଼ିଯିବ ବୋଲି ନିଆଁ ପାଖରୁ ଦୂରେଇ ରହିବା ଅପେକ୍ଷା ନିଆଁକୁ ଯଥାଯଥ ଭାବରେ ବ୍ୟବହାର କରି ଶିଖିବା ହିଁ ଉଚିତ - ଏଇଟା ଥିଲା ତାଙ୍କର ମତ । ସେଥିପାଇଁ ତାଙ୍କ ନେତୃତ୍ୱରେ ଏ ଦେଶରେ ଅଭୂତପୂର୍ବ ନାରୀ ଜାଗରଣ ହୋଇ ପାରିଲା ।

କିନ୍ତୁ ବିନୋବାଜୀ ଏ ବିଚାରକୁ ଆଉ ଗୋଟାଏ ସ୍ତରକୁ ନେଇଯାଇ କହିଲେ ଯେ ସନ୍ତାନ ଓ ପରିବାର ପ୍ରତି ତୁମର ଯେଉଁ ସ୍ନେହ ଓ ଆସକ୍ତି ରହିଛି ତାକୁ ଆହୁରି ପ୍ରସାରିତ କରିଦିଅ । ସ୍ନେହର ପରିସରକୁ ବ୍ୟାପକ କରିବାରେ ହିଁ ମଣିଷ ଜୀବନର ସାର୍ଥକତା ନିହିତ । ସ୍ନେହ ଯେତେ ବ୍ୟାପକ ହେବ, ଆନନ୍ଦ ସେତେ ସଂପ୍ରସାରିତ ହେବ । ଧନ ସଂଗ୍ରହ କରିବାର ଯେଉଁ ସାମର୍ଥ୍ୟ ଓ ବାସନା ତୁମ ମନରେ ରହିଛି, ତାକୁ ପରିବାରର ସ୍ୱାର୍ଥ ସାଧନାରେ ଆବଦ୍ଧ ନ ରଖି ସମାଜର, ନିଜ ଗାଁର ସ୍ୱାର୍ଥ ସାଧନାରେ ନିୟୋଜିତ କର । ଅବଶ୍ୟ ଏ ସବୁ ତତ୍ତ୍ୱ ବୁଝାଇବାର ମାଧ୍ୟମ ଥିଲା ।

x x x x x

## ସର୍ବୋଦୟ - ମହାସମନ୍ୱୟର ଦର୍ଶନ

ବିନୋବାଜୀ ଆମକୁ ବୁଝାଇଥିଲେ ଯେ ସମାଜ ପରିବର୍ତ୍ତନ ହେଉଛି ମାର୍କସ୍ ଆଦି କମ୍ୟୁନିଷ୍ଟଙ୍କ ଧ୍ୟେୟ । ବ୍ୟକ୍ତିର ହୃଦୟ ପରିବର୍ତ୍ତନ ଥିଲା ସମର୍ଥ ରାମଦାସ, ଚୈତନ୍ୟ, ନାନକ, କବୀର ପ୍ରମୁଖ ସାଧୁସନ୍ଥଙ୍କ ଧ୍ୟେୟ । ବିଚାର ପରିବର୍ତ୍ତନ ହେଲା ଶଙ୍କରାଚାର୍ଯ୍ୟ, ରାମାନୁଜାଚାର୍ଯ୍ୟ ପ୍ରମୁଖ ଆଚାର୍ଯ୍ୟଙ୍କ ଧ୍ୟେୟ । ଆମ ସର୍ବୋଦୟ ଆନ୍ଦୋଳନରେ ଏ ତିନୋଟିଯାକ ଧ୍ୟେୟର ସମାବେଶ ହୋଇଥିବାରୁ ଆମକୁ ଅଧିକରୁ ଅଧିକ କର୍ମକୁଶଳତା ତତ୍ତ୍ୱଶୋଧନ ଓ ହୃଦୟ ପରିବର୍ତ୍ତନ ପାଇଁ ସାଧନା କରିବାକୁ ହେବ । ସେଥିପାଇଁ ନାନା କାର୍ଯ୍ୟକ୍ରମ ମାଧ୍ୟମରେ ଲୋକ - ଚିତ୍ତକୁ ଏହି ବିଚାର ଆଡ଼କୁ ଟାଣିନେବା ପାଇଁ ଉଦ୍ୟମ ଚାଲିଥାଏ ।

x x x x x

## (ସୀମାନ୍ତ ଗାନ୍ଧୀ ଖାଁ ସାହେବ ଗଫୁର ଖାଁଙ୍କ ଓଡ଼ିଶା ଗସ୍ତ ସମୟରେ)

ଖାନ୍‌ସାହେବଙ୍କ ସଙ୍ଗେ ପଶ୍ଚିମ ବଙ୍ଗ ଓ ଓଡ଼ିଶାରେ ଦଶଦିନ କଟେଇବା

ପରେ ବିଦାହେବା ଦିନ ମୁସଲମାନ ମହିଳାଙ୍କ ମଧ୍ୟରେ କାମ କରିବା କଥା ସେ ମୋତେ କହିଲେ । ମୁଁ ମୁସଲମାନ ମହିଳା ସମାଜରେ ବରୀରେ ଓ ଅନ୍ୟତ୍ର କାମ କରିବା କଥା କହି ତାଙ୍କୁ ପଚାରିଲି ଯେ, ଇସ୍‌ଲାମରେ ଯେ ରୋଜା, ନମାଜ, ହଜ୍, ଜୋହାଦ୍, ଜକାତ ପାଇଁ ନିର୍ଦ୍ଦେଶ ଦିଆଯାଇଛି । ଅନେକ ବନ୍ଧୁ ଜେହାଦ୍‌ର ଅର୍ଥ ଅନ୍ୟ ଧର୍ମାବଲମ୍ବୀଙ୍କ ବିରୁଦ୍ଧରେ ଯୁଦ୍ଧ କରିବା ତାହାର ଅର୍ଥ ବୋଲି କହୁଛନ୍ତି । ଖାନ୍‌ସାହେବ କହିଲେ - ତୁମେ ସେମାନଙ୍କୁ ବୁଝାଇବ ଯେ ଜେହାଦ୍‌ର ପ୍ରକୃତ ଅର୍ଥ ହେଉଛି ମଜ୍‌ଲୁମ୍; ଅର୍ଥାତ୍ ଅତ୍ୟାଚାରିତକୁ ଜାଲିମ୍ - ଅର୍ଥାତ୍ ଅତ୍ୟାଚାରୀ ହାତରୁ ରକ୍ଷା କରିବା । ଲୋକଙ୍କୁ ଖୁଦାଙ୍କ ଧର୍ମକଥା ଶୁଣାଇବା ଏବଂ ସେଥିପାଇଁ ଦୁଃଖ କଷ୍ଟ ସହିବା ହିଁ ଜୋହାଦ୍ । ପୈଗମ୍ବର ମହମ୍ମଦଙ୍କର ଜୀବନର କେଉଁ ଘଟଣାର ଉଦାହରଣ ଦ୍ୱାରା ଉପରୋକ୍ତ କଥା ପ୍ରତିପନ୍ନ କରିହେବ ଏବଂ ହଜରତ ମହମ୍ମଦ ଅହିଂସାର ସମର୍ଥକ ଥିଲେ ବୋଲି ପ୍ରମାଣ କରିହେବ ପଚାରିବାରୁ ସେ କହିଲେ, ପୈଗମ୍ବର ମହମ୍ମଦ ମକ୍‌କାରେ ଥିବାବେଳେ ଧର୍ମପାଇଁ ବହୁତ କଷ୍ଟ ସହିଥିଲେ ହେଁ ତରବାରୀ ଧାରଣ କରି ନଥିଲେ । ତାଙ୍କ ଗୋଡ଼କୁ ବାନ୍ଧି ଦିଆହୋଇଥିଲା, ବହୁତ ନିର୍ଯ୍ୟାତନା ତାଙ୍କୁ ସହିବାକୁ ପଡ଼ିଲା, ତଥାପି ସେ ଖଣ୍ଡା ଧରିଲେ ନାହିଁ । ସେଥିପାଇଁ ମୁଁ ଗାନ୍ଧୀଜୀଙ୍କୁ କହିଥିଲି ଯେ, ଆପଣ କିଛି ନୂଆ କଥା କହୁ ନାହାନ୍ତି । ପୈଗମ୍ବର ଆମକୁ ଏହି ଶିକ୍ଷା ଦେଇଥିଲେ । ଆମେ ତାକୁ ପାଶୋରି ପକେଇଥିଲୁ । ଆପଣ ତାକୁ ମନେ ପକେଇଦେଲେ ।

x x x x x

**ନହି କଲ୍ୟାଣକୃତ୍ କଶ୍ଚିତ୍ ....**

ଯମୁନା ମାଉସୀ (ପୁରୀର ସ୍ୱନାମଧନ୍ୟା ଯମୁନା ଦେବୀ) ଙ୍କ ଦର୍ଶନ ଅନୁସାରେ "ଷାଠିଏ ବର୍ଷ ପୁରିଗଲେ ତେଣିକି ତୁମର ଖସିବା ବେଳ ଆସିଗଲା ଜାଣିବ । ଆଉ ଘାଣ୍ଟି ହେବା କଥା ନୁହେଁଟି । ତେବେ ଯେତେଦିନ ବଞ୍ଚିଥାଇଁ କିଛି କାମ କରୁଥିବା ତ !" ତେଣୁ ଏଣିକି ବିଭିନ୍ନ ସଂସ୍ଥା ଯଥା କସ୍ତୁରବା ଗାନ୍ଧୀ, ରାଷ୍ଟ୍ରୀୟ ସ୍ମାରକ ଟ୍ରଷ୍ଟ, ଆଚାର୍ଯ୍ୟ ହରିହର ଦାସ ମେମୋରିଆଲ ଟ୍ରଷ୍ଟ, ନାଗରୀ ଲିପି ପରିଷଦ, ଆଚାର୍ଯ୍ୟ ହରିହର ସ୍ମୃତି ସଂସଦ, ହରିଦାସପୁର ସେବା ସମିତି, ଗାନ୍ଧୀ ସ୍ମାରକ ନିଧିର ଗାନ୍ଧୀ ସାହିତ୍ୟ ପ୍ରକାଶନ ବିଭାଗ, ଉତ୍କଳ ସର୍ବୋଦୟ ମଣ୍ଡଳ ଆଦି ଯେଉଁ ଅନୁଷ୍ଠାନଗୁଡ଼ିକର ମୂଳଦୁଆ ପକାଇବାରେ ଜଣେ ସାଧାରଣ ମୂଲିଆଣୀ ଭଳି ସମୟ ଓ ଶକ୍ତି ଖଟେଇଥିଲି, ସେହି ଅନୁଷ୍ଠାନଗୁଡ଼ିକ ଯଦି ମୋର ସାହାଯ୍ୟ ଲୋଡ଼ିବେ

ସେମାନଙ୍କୁ ଯଥାସମ୍ଭବ ସାହାଯ୍ୟ କରିବି କିନ୍ତୁ ମନେ ମନେ ସେଥିରୁ ନିବୃତ୍ତ ହେବାପାଇଁ ମନସ୍ଥ କଲି । ଗୋଟିଏ ଚଉଦ ବର୍ଷର ଅଜ୍ଞ ବାଳିକା ପ୍ରଚଳିତ ସମାଜ ବ୍ୟବସ୍ଥାର ଧରାବନ୍ଧା ଚଳାବାଟକୁ ଛାଡ଼ି ଦେଇ କେବଳ ଶ୍ରଦ୍ଧାକୁ ସମ୍ବଳ କରି ମହାତ୍ମାଗାନ୍ଧୀଙ୍କ ଗବେଷଣାଗାରର ଗିନିପିଗ୍ ହେବା ପାଇଁ ସ୍ୱେଚ୍ଛାରେ ମନ ବଳାଇଥିଲା । ଯେଉଁ ଅହିଂସାତ୍ମକ ବା ପ୍ରେମଭିତ୍ତିକ ସମାଜ ରଚନା କରିବା ପାଇଁ ମହାତ୍ମାଗାନ୍ଧୀ ଏ ଦେଶର ଲକ୍ଷ ଲକ୍ଷ ନାଗରିକଙ୍କୁ ଘେନି ସତ୍ୟାଗ୍ରହ, ସର୍ବୋଦୟ ଓ ଶାନ୍ତିସେନା ବିଚାରର ପ୍ରୟୋଗ ଚଳାଇଥିଲେ ଏବଂ ସମଗ୍ର ପୃଥିବୀର ଚିନ୍ତାଶୀଳ ଲୋକେ ଆଜି ଯେଉଁ ହିଂସାନିରପେକ୍ଷ ସମାଜ ରଚନା ଉପରେ ଗୁରୁତ୍ୱ ଆରୋପ କରୁଛନ୍ତି ସେହି ସମାଜରେ ବ୍ୟକ୍ତିର ଆଚରଣ କିପରି ହେବା ଉଚିତ ସେ ବିଷୟରେ ଗାନ୍ଧୀଜୀ ଯାହା କହିଥିଲେ ତାକୁ ନିଜ ଜୀବନରେ ଆଚରିବା ପାଇଁ ଯେଉଁ ଘାତ ପ୍ରତିଘାତ, ହର୍ଷ ବିଷାଦ, ବିପଦ ସମ୍ପଦ, ଦୁଃଖସୁଖର ଲହଡ଼ି ଭାଙ୍ଗି ଭାଙ୍ଗି ଏ ପଇଁଚାଳିଶଟି ବସନ୍ତ କଟିଲା ଏ ଅନାଦି ଅନନ୍ତ କାଳ ପ୍ରବାହରେ ସେହି ପଇଁଚାଳିଶ ବର୍ଷ ଗୋଟିଏ ଜଳକଣା ସଙ୍ଗେ ସୁଦ୍ଧା ସରି ନୁହେଁ, ପୁଣି ତାହା ଗୋଟିଏ ଜଳବିମ୍ବ ଭଳି କ୍ଷଣସ୍ଥାୟୀ। ତଥାପି ତହିଁରେ ପରମାତ୍ମାଙ୍କ ଅସ୍ତିତ୍ୱ ବିଦ୍ୟମାନ, ତେଣୁ ତାହା ହେୟ ନୁହେଁ । ଜ୍ଞାନ ବିହୀନ ଶ୍ରଦ୍ଧାଦ୍ୱାରା ଯେଉଁ କର୍ମ ସାଧିତ ହୁଏ ସେଥିରେ ଭୁଲଭ୍ରାନ୍ତି ଓ ମିଥ୍ୟା ଅହଙ୍କାର ରହିବା ହିଁ ସ୍ୱାଭାବିକ ଏବଂ ରହିଥିବ ମଧ୍ୟ । କେବଳ ଭରସା ଏତିକି "ନହି କଲ୍ୟାଣକୃତ୍ କଶ୍ଚିତ୍ ଦୁର୍ଗତିଂ ତାତ ଗଚ୍ଛତି ।"

x x x x x

## ମୋର ସାଥି ଭଉଣୀମାନେ

ମୋର ଛଅସ୍ତରିବର୍ଷ ବୟସରେ ଉତ୍କଳ ଖଦୀ ମଣ୍ଡଳଙ୍କ ଡାକରାରେ ମୁଁ ଗୋଟିଏ ଆଦିବାସୀ ଅଞ୍ଚଳରେ କାମ କରିବାକୁ ଗଲି । ସେଠାରେ ମଣ୍ଡଳଙ୍କର ସରକାରଙ୍କ ଠାରୁ ଜମି ପାଇବା କାମରେ ମୁଁ ରାଜସ୍ୱ ମନ୍ତ୍ରୀଙ୍କଠାରୁ ଆରମ୍ଭ କରି ଜିଲ୍ଲାପାଳ, ତହସିଲଦାର, ଅମୀନଙ୍କ ଦ୍ୱାରସ୍ଥ ହେଲି । ପୁଣି ଜମି ପାଇବା ପରେ ମଧ୍ୟ ଲିଜ୍‌ର ସର୍ତ୍ତ ଅନୁସାରେ ଶିକ୍ଷାର ପ୍ରସାରଠାରୁ ଆରମ୍ଭ କରି ବୃକ୍ଷରୋପଣ କାର୍ଯ୍ୟ କରିବା ପାଇଁ ଶିକ୍ଷାମନ୍ତ୍ରୀଙ୍କଠାରୁ ଆରମ୍ଭ କରି ଶିକ୍ଷା ବିଭାଗର ନିର୍ଦ୍ଦେଶକ ଓ ତାଙ୍କ ପାଖଲୋକ ତଥା ମାଧ୍ୟମିକ ଶିକ୍ଷାବୋର୍ଡ଼କୁ ତନ୍ତୀ ଘର କଣ୍ଡାପରି ରାୟଗଡ଼ା-ଭୁବନେଶ୍ୱର-କଟକ ବ୍ରହ୍ମପୁରକୁ ଦଉଡ଼ିଲି । ଏଥିରୁ ରାଜ୍ୟର ଶାସନ ବ୍ୟବସ୍ଥା ବିଷୟରେ ମୁଁ ପ୍ରତ୍ୟକ୍ଷ ଜ୍ଞାନ ହାସଲ କରି ପାରିଲି ।

ଏହାଦ୍ୱାରା ମୋର ଗୋଟିଏ ଅପୂର୍ଣ୍ଣ ବାସନା ମଧ୍ୟ ପୂର୍ଣ୍ଣ ହେଲା । ମୋଠାରୁ ବୟସରେ ମୋ ଠାରୁ ସାନ ଯେଉଁ ଭଉଣୀମାନେ ନିୟମଗିରି ପାହାଡ଼ ଉପରେ ଡଙ୍ଗରିଆ କନ୍ଧ ଗାଁରେ ରହି କାମକଲେ, ରାମନାଗୁଡ଼ାର ଦୁର୍ଭିକ୍ଷ ପ୍ରପୀଡ଼ିତ ଅଞ୍ଚଳର ପାହାଡ଼ ଉପରେ ଥିବା ଗାଁ ଗୁଡ଼ିକରେ ହାତୀ ପିଠିରେ ରିଲିଫ୍ ରସଦ ଲଦି ଯାଇ ଲୋକଙ୍କ ପ୍ରାଣରକ୍ଷା କରିଥିଲେ, କୁଷ୍ଠରୋଗରେ ଅଚଳ ହୋଇ ଯାଇଥିବା ଲୋକଙ୍କୁ ସୁସ୍ଥ, କାର୍ଯ୍ୟକ୍ଷମ କରାଇ ପାରିଥିଲେ ସେମାନଙ୍କର ଅସୀମ ସାହସିକତା ଓ ରୋମାଞ୍ଚକାରୀ କାହାଣୀ ଶୁଣିଲାବେଳେ ମୁଁ ନିଜକୁ ଅପଦାର୍ଥ ମନେ କରୁଥିଲି ଏବଂ ଆଦିବାସୀ କ୍ଷେତ୍ରରେ କାମ କରିବା ପାଇଁ ଛଟପଟ ହେଉଥିଲି । ମଣ୍ଡଳଙ୍କ ଜରିଆରେ ମୋର ସେ ଇଚ୍ଛା ପୂରଣ ହେଲା । ମୁଁ ସେମାନଙ୍କ ସାଙ୍ଗରେ ବିଶେଷରେ ଆଦିବାସୀ ବାଳିକାମାନଙ୍କ ସହିତ ରହିବା ଫଳରେ ଦେଖିଲି ଯେ ସେମାନେ ଅଣଆଦିବାସୀମାନଙ୍କଠାରୁ ବୌଦ୍ଧିକ ଓ ବ୍ୟାବହାରିକ ଜ୍ଞାନରେ ନିଊନ ନୁହନ୍ତି । ପୁଣି ଆଦିବାସୀ ସମାଜର କେତେଗୁଡ଼ିଏ ଚଳଣି ଅଣ ଆଦିବାସୀ ସମାଜ ପାଇଁ ଅନୁକରଣୀୟ ମନେ କଲି । ଉଦାହରଣ ସ୍ୱରୂପ ଡଙ୍ଗରିଆ କନ୍ଧ ସମାଜରେ କନ୍ଧ ବାପା ହେବାର ଗୌରବ ହାସଲ କଲେ ସଙ୍ଗେ ସଙ୍ଗେ ଡଙ୍ଗରକୁ ଯାଇ ଜଙ୍ଗଲ ସଫା କରି ହଳଦୀଚାଷ ପାଇଁ ଖଣ୍ଡେ ଜମି ଉଠିଆ କରେ । ପୁଅ ବଡ଼ ହୋଇ ଡଙ୍ଗର ଚଢ଼ି ଶିଖିବା ଯାଏ ପ୍ରତିବର୍ଷ କିଛି କିଛି ଜମି ହଳଦୀ ଚାଷ ଉପଯୋଗୀ କରେ । ପୁଣି ସନ୍ତାନ ଜନ୍ମ ହେବାପୂର୍ବରୁ ସେମାନେ ସେମାନଙ୍କ ଖାଦ୍ୟ ଦୁଇଜଣଙ୍କ ପାଇଁ ଦୁଇଟି ପତର ଦୋକାନରେ ବାଢ଼ି ଖାଆନ୍ତି । ସନ୍ତାନ ହେବା ପରେ ତାଙ୍କ ଘରେ ଆଉ ଗୋଟିଏ ଦୋନାରେ ଖାଦ୍ୟ ବଢ଼ା ହୁଏ । ସେ ଦୋନାଟି ପ୍ରସୂତି ଖାଏ । ପୁଅ ମା କ୍ଷୀର ଛାଡ଼ି ସାଧାରଣ ଖାଦ୍ୟ ଖାଇ ଶିଖିବା ପର୍ଯ୍ୟନ୍ତ ଏହିପରି ଭାବରେ ଖାଦ୍ୟ ବଣ୍ଟା ହୁଏ । ଏହିପରି ଅନେକ ଚଳଣିରେ ବିବେଚନାପୂର୍ବକ ସାମ୍ୟମୈତ୍ରୀର ଭାବନା ଦେଖିବାକୁ ପାଇଲି ।

# ଅନ୍ନପୂର୍ଣ୍ଣା ମହାରାଣା

ଜନ୍ମ – ୩ ନଭେମ୍ବର ୧୯୧୭, ବାଖରାବାଦ, କଟକ ।

ପିତା - ଗୋପବନ୍ଧୁ ଚୌଧୁରୀ ।

ମାତା - ରମାଦେବୀ ଚୌଧୁରୀ ।

ଦାଦା - ନବକୃଷ୍ଣ ଚୌଧୁରୀ ।

ଖୁଡୀ – ମାଳତୀ ଚୌଧୁରୀ ।

ଭାଇ – ମନମୋହନ ଚୌଧୁରୀ ।

ସ୍ୱାମୀ - ଶରତ ଚନ୍ଦ୍ର ମହାରାଣା ।

**ଶିକ୍ଷା** – ବିଲାତି ସ୍କୁଲରେ ପାଠ ପଢ଼ିବା ଉଚିତ ନୁହେଁ । ଏହା ନିଷ୍ପତ୍ତି କରି ତାଙ୍କ ପିତା ମାତା ତାଙ୍କୁ ଗୃହରେ ଶିକ୍ଷାଦାନ ବ୍ୟବସ୍ଥା କରିଥିଲେ । **ବାନର ସେନା** - ସମଗ୍ର ପରିବାର ସ୍ୱାଧୀନତା ସଂଗ୍ରାମରେ ଝାସ ଦେଇଥିବାରୁ ସେ ବା କାହିଁକି ପଛେଇବେ ? ଏଣୁ ବାନର ସେନା ଭାବରେ କାର୍ଯ୍ୟକରି ମାତ୍ର ୧୩ ବର୍ଷ ବୟସରେ ଜେଲ ଗଲେ ।

**ହରିଜନ ପଦଯାତ୍ରା** –ଓଡିଶାରେ ଗାନ୍ଧୀଜୀ ଚଳାଇଥିବା ହରିଜନ ଆନ୍ଦୋଳନର ସେ ସହଯୋଗୀ ଥିଲେ । ହରିଜନ ପଦଯାତ୍ରାରେ ଗାନ୍ଧୀଜୀଙ୍କର ସହଯୋଗୀ ରହିଥିଲେ ।

**ମୌଳିକ ଶିକ୍ଷା** - ଗାନ୍ଧୀଜୀଙ୍କ ସେବାଗ୍ରାମ ଆଶ୍ରମରେ ଅନ୍ନପୂର୍ଣ୍ଣା ଅନେକଦିନ ଅବସ୍ଥାନ କରୁଥିଲେ । ଗାନ୍ଧୀଜୀ "ମୌଳିକ ଶିକ୍ଷା" ନାମରେ ଏକ ଶିକ୍ଷା ବ୍ୟବସ୍ଥା ଭାରତୀୟମାନଙ୍କ ପାଇଁ ଆରମ୍ଭ କଲେ । ଏହାର ଦାୟିତ୍ୱରେ ଶ୍ରୀ ଆର୍ଯ୍ୟନାୟକମ ଓ ଆଶାଦେବୀ ଆର୍ଯ୍ୟନାୟକମ ଥିଲେ । ଏହି ମୌଳିକ ଶିକ୍ଷା ବିଦ୍ୟାଳୟର ସେ ଦେଶରେ ସର୍ବପ୍ରଥମ ଯୋଗଦାନ କରି ଶିକ୍ଷାଗ୍ରହଣ କରିଥିଲେ ।

**ଲବଣ ସତ୍ୟାଗ୍ରହ** - ମାଆ ରମାଦେବୀ ଓ ଖୁଡୀ ମାଳତୀ ଦେବୀଙ୍କ ସହ ମିଶି କୁଜଙ୍ଗ ଅଞ୍ଚଳରେ ଲୁଣମରା କାମ କରିଥିଲେ ।

**ବରୀ**- ନିଜ ପିତା ମାତା ଅବିଭକ୍ତ କଟକ ଜିଲ୍ଲାର ବରୀଠାରେ କାର୍ଯ୍ୟ କରୁଥିବାରୁ ଅନ୍ନପୂର୍ଣ୍ଣା ମଧ୍ୟ ସେଠାରେ ରହିଲେ । ସେଠି ୧୯୩୪ ରୁ ସେ ହରିଜନ ସେବା, ନିଶା ନିବାରଣ, ମୌଳିକ ଶିକ୍ଷା, ଖଦୀ, ଗ୍ରାମ ସଫେଇ ଭଳି ୧୮ ପ୍ରକାରର ରଚନାତ୍ମକ କାର୍ଯ୍ୟ କରୁଥିଲେ ।

**ଡେଲାଙ୍ଗ-** ୧୯୩୮ ରେ ପୁରୀ ଜିଲ୍ଲା ଡେଲାଙ୍ଗ ନିକଟସ୍ଥ ବେରବୋଇ ଗାନ୍ଧୀ ସମ୍ମିଳନୀରେ ୭ ଦିନ କାର୍ଯ୍ୟ କରିଥିଲେ ।

**୧୯୪୨-** ୧୯୪୨ ର ଭାରତ ଛାଡ ଆନ୍ଦୋଳନରେ ସେ ଅଗ୍ରଣୀ ଭୂମିକାରେ ଥିଲେ । ବରୀ, କଳାମାଟିଆ, ଇଂରେଜ ବିରୋଧୀ ସଭାର ନେତୃତ୍ୱ ନେଉଥିବା ବେଳେ ପୁଲିସ ଆଖିବୁଜା ଗୁଳି ଚଳାଇଲା ଓ ସାଉଁଟି, ସାନନ୍ଦ, ହାଡିବନ୍ଧୁ, ମାୟାଧର ପ୍ରଭୃତି ୪ ଜଣ ଘଟଣାସ୍ଥଳରେ ଶହୀଦ ହୋଇଗଲେ । ଅନ୍ନପୂର୍ଣ୍ଣା ଆହତମାନଙ୍କର ସେବା କରିବା ସହ ଗୁଳି କରିବା ପାଇଁ ନିଜ ଛାତି ପତାଇଦେଲେ ।

**ଜେଲ** -୧୯୪୨ ରୁ ୧୯୪୪ ମସିହା ଯାଏ ଦୁଇଥରରେ କଟକ ଓ ଯାଜପୁର ଜେଲରେ ରହିଲେ ।

**ଖଦୀକାମ-** ଗାନ୍ଧୀଜୀଙ୍କ ଡାକରାରେ ପୁରୀ ଜିଲ୍ଲାର ବୀର ନରସିଂହପୁର ଓ କଟକରେ ଖଦୀକାମ ଓ ଅସ୍ପୃଶ୍ୟତା ନିବାରଣ କାର୍ଯ୍ୟ କରିଥିଲେ ।

**ବିବାହ** - ୧୯୪୨ ରେ ପ୍ରଖ୍ୟାତ ସାହିତ୍ୟିକ ଚନ୍ଦ୍ରମୋହନ ମହାରାଣାଙ୍କ ପୁତ୍ର ଶିକ୍ଷାବିତ ଶରତ ଚନ୍ଦ୍ର ମହାରାଣାଙ୍କ ସହ ବିବାହ । ଏଥିରେ ପୌରହିତ୍ୟ କରିଥିଲେ ଆଚାର୍ଯ୍ୟ ହରିହର ।

**କସ୍ତୁରବା ଟ୍ରଷ୍ଟ** -କସ୍ତୁରବାଙ୍କ ଦେହାନ୍ତ ପରେ ଗାନ୍ଧୀଜୀ ମହିଳା ଓ ଶିଶୁ କଲ୍ୟାଣ ପାଇଁ କସ୍ତୁରବା ଟ୍ରଷ୍ଟର ଆରମ୍ଭ କଲେ । ଓଡିଶାରେ ଏହି କାମର ନେତୃତ୍ୱ ମାଆ ରମାଦେବୀ ଓ ଅନ୍ନପୂର୍ଣ୍ଣା ନେଇଥିଲେ । ଅନ୍ନପୂର୍ଣ୍ଣା ଏହାର ଟ୍ରଷ୍ଟୀ ମଧ୍ୟ ଥିଲେ ।

**ଭୂଦାନ** - **ଗ୍ରାମଦାନ**-ସନ୍ଥ ବିନୋବାଙ୍କ ନେତୃତ୍ୱରେ ଦେଶବ୍ୟାପୀ ଯେଉଁ ଭୂଦାନ ଗ୍ରାମଦାନ ଆନ୍ଦୋଳନ ଆରମ୍ଭ ହେଲା ସେଥିରେ ଅନ୍ନପୂର୍ଣ୍ଣା ଅଗ୍ରଣୀ ଥିଲେ । ସାରା ରାଜ୍ୟରେ ଘୁରି ବୁଲି ହଜାର ହଜାର ଏକର ଜମି ସେ ଦାନରେ ସଂଗ୍ରହ କରି ଭୂମିହୀନଙ୍କ ମଧ୍ୟରେ ବଣ୍ଟନ କରିଥିଲେ ।

**ବ୍ରହ୍ମବିଦ୍ୟା** -ସନ୍ଥ ବିନୋବା ଆଧ୍ୟାତ୍ମିକତାକୁ ଏକ ନୂଆ ମୋଡ ଦେଇ "ବ୍ରହ୍ମବିଦ୍ୟା"ରେ ନାରୀ ମାନଙ୍କର ଅଧିକାର ରହିଥିବା ଦର୍ଶାଇ ପୌନାର ଠାରେ 'ବ୍ରହ୍ମବିଦ୍ୟା ମନ୍ଦିର' ଆରମ୍ଭ କରି ବ୍ରହ୍ମଚାରିଣୀ ମାନଙ୍କୁ ବ୍ରହ୍ମବିଦ୍ୟା ଉପାସନା ପାଇଁ ବ୍ୟବସ୍ଥା କଲେ । ଏକମାତ୍ର ଅନ୍ନପୂର୍ଣ୍ଣା ବିବାହିତା ହୋଇ ସୁଦ୍ଧା ଏଠାରେ ଅବସ୍ଥାନ ପାଇଁ ଅନୁମତି ପ୍ରାପ୍ତ ହୋଇଥିଲେ ।

**ସେବାକାର୍ଯ୍ୟ** -୧୯୬୬ କଳାହାଣ୍ଡି ଦୁର୍ଭିକ୍ଷ, ୧୯୬୯ ପ୍ରଳୟଙ୍କାରୀ ବାତ୍ୟା, ୧୯୯୯ ମହାବାତ୍ୟା ଅନ୍ନପୂର୍ଣ୍ଣା ସର୍ବୋଦୟ ରିଲିଫ୍ କମିଟି ମାଧ୍ୟମରେ କାର୍ଯ୍ୟରତା ଥିଲେ ।

**ଶାନ୍ତିସେନା** - ବନାରସରେ ୧୯୫୯-୬୦ ଯାଏ ଅଖିଳ ଭାରତୀୟ ମହିଳା ଶାନ୍ତିସେନା ବିଦ୍ୟାଳୟର ପରିଚାଳିକା ଥିଲେ ।

**ରାଉରକେଲା**-୧୯୬୪ ରେ ରାଉରକେଲାଠାରେ ହୋଇଥିବା ସାଂପ୍ରଦାୟିକ ଦଙ୍ଗା ପ୍ରଶମନରେ ଅନ୍ନପୂର୍ଣ୍ଣା ମୁଖ୍ୟ ଭୂମିକାରେ ଥିଲେ ।

**ଛାତ୍ର ଆନ୍ଦୋଳନ**-୧୯୬୪ ର ଐତିହାସିକ ଛାତ୍ର ଆନ୍ଦୋଳନ ଓ ଡାକ୍ତରୀ ଛାତ୍ର ଆନ୍ଦୋଳନର ସମାଧାନ କ୍ଷେତ୍ରରେ ଅନ୍ନପୂର୍ଣ୍ଣା ମୁଖ୍ୟ ଭୂମିକାରେ ଥିଲେ ।

**ବାଙ୍ଗଲାଦେଶ**- ୧୯୭୧ ରେ ବାଙ୍ଗଲାଦେଶ ମୁକ୍ତି ଆନ୍ଦୋଳନ କାଳରେ ଅନ୍ନପୂର୍ଣ୍ଣା ବାଙ୍ଗଲାଦେଶ ସୀମାରେ କାର୍ଯ୍ୟ କରିଥିଲେ ।

**ଚମ୍ବଲ ଦସ୍ୟୁ** - ଚମ୍ବଲ ଦସ୍ୟୁମାନଙ୍କ ଭିତରେ କାର୍ଯ୍ୟକରି ୧୯୭୨ ରେ ସେମାନଙ୍କୁ ଆତ୍ମସମର୍ପଣ ପାଇଁ ପ୍ରବର୍ତ୍ତାଇଥିଲେ ଓ ଶେଷରେ ଦସ୍ୟୁମାନେ ଜୟପ୍ରକାଶଙ୍କ ନିକଟରେ ଆତ୍ମସମର୍ପଣ କଲେ ।

**ଜରୁରୀ ପରିସ୍ଥିତି**- ଇନ୍ଦିରାଗାନ୍ଧୀ ଦେଶରେ ଜରୁରୀ ପରିସ୍ଥିତି ଜାରି କରି ୧୯ ମାସ ଧରି ଦେଶକୁ ଜେଲଖାନାରେ ପରିଣତ କରିଦେଲେ । ଅନ୍ନପୂର୍ଣ୍ଣା ଏହା ବିରୁଦ୍ଧରେ ସଂଗ୍ରାମ କଲେ । ପ୍ରଚାରପତ୍ର ଛାପିବା ଓ ଚାନ୍ଦା ସଂଗ୍ରହ ତାଙ୍କର ମୁଖ୍ୟକାମ ଥିଲା ।

**ସର୍ବୋଦୟ ସମ୍ମିଳନୀ** -୧୯୫୦ ଅନୁଗୁଳ, ୧୯୫୫ ପୁରୀ ଓ ୨୦୦୩ କଟକରେ ଅନୁଷ୍ଠିତ ଅଖିଳ ଭାରତୀୟ ସର୍ବୋଦୟ ସମାଜ ସମ୍ମିଳନୀର ମୁଖ୍ୟ ଭୂମିକାରେ ରହିଥିଲେ ।

**କଂପାନୀ ଲୁଣ ବିରୋଧୀ ଆନ୍ଦୋଳନ** - ଆୟୋଡିନ ଲୁଣ ଆଳରେ ସରକାର କଂପାନୀମାନଙ୍କ ହାତରେ ଦେଶର ଲୁଣଚାଷକୁ ଓ ବ୍ୟବସାୟ ଟେକିଦେଲେ ଏହାକୁ ବିରୋଧ କରି ରାଷ୍ଟ୍ରବ୍ୟାପୀ ଯେଉଁ ଆନ୍ଦୋଳନ ହେଲା, ତାହାର ମୁଖ୍ୟ ଭୂମିକାରେ ଥିଲେ ଅନ୍ନପୂର୍ଣ୍ଣା ।

**ଘରୋଇକରଣ ବିରୋଧୀ ଆନ୍ଦୋଳନ-** ଗ୍ଲୋବାଲାଇଜେସନ ନୀତିକୁ ଭାରତ ସରକାର ଆପଣାଇବାରୁ ରାଷ୍ଟ୍ରବ୍ୟାପୀ ତାହାର ବିରୋଧ ହେଲା । ଅନ୍ନପୂର୍ଣ୍ଣା ମଧ ସରକାରଙ୍କର ଘରୋଇକରଣ- ଉଦାରିକରଣ-ଜଗତିକରଣ ନୀତି ବିରୋଧୀ ଆନ୍ଦୋଳନରେ ସର୍ବାଗ୍ରେ ରହିଥିଲେ ।

**ଗୋପାଳବାଡି -** ଆଦିବାସୀ ପିଲାଏ ଶିକ୍ଷିତ ହୋଇ ନିଜ ଜାତିକୁ ଶିକ୍ଷିତ କରାଇବେ । ଏହି ଲକ୍ଷ୍ୟନେଇ ଗାନ୍ଧୀ ମାର୍ଗରେ ରାୟଗଡା ନିକଟସ୍ଥ ଗୋପାଳବାଡିଠାରେ ଆଦିବାସୀ ଛାତ୍ରୀ ନିବାସର ଆରମ୍ଭ ଓ ପରିଚାଳନା ।

**ହିନ୍ଦ୍ ସ୍ୱରାଜ-** ଗାନ୍ଧୀଜୀଙ୍କ ହିନ୍ଦ୍ସ୍ୱରାଜ ପରିକଳ୍ପନାକୁ ସାକାର ରୂପ ଦେବାପାଇଁ ୨୦୧୦ ରେ 'ହିନ୍ଦ ସ୍ୱରାଜ ଅଭିଯାନ ଟ୍ରଷ୍ଟ'ର ଗଠନ ।

**ପୋସ୍କୋ ବିରୋଧୀ ଆନ୍ଦୋଳନ -** ପୋସ୍କୋ ବିରୋଧୀ ଆନ୍ଦୋଳନରେ ସାମିଲ ହୋଇ ଜଗତସିଂହପୁରଠାରେ ଅଭିଭାଷଣ ।

**ସମ୍ମାନ ଓ ପୁରସ୍କାର -** ଡି.ଲିଟ, ଉତ୍କଳ ବିଶ୍ୱବିଦ୍ୟାଳୟ ଓ କେନ୍ଦ୍ରୀୟ ବିଶ୍ୱବିଦ୍ୟାଳୟ, କୋରାପୁଟ, ସାରଳା ପୁରସ୍କାର ଆତ୍ମଜୀବନୀ ଅମୃତ ଅନୁଭବ ପାଇଁ । ସ୍ୱାଧୀନତା ସଂଗ୍ରାମୀ ଭାବରେ ରାଷ୍ଟ୍ରପତିଙ୍କ ଦ୍ୱାରା ସମ୍ମାନିତା । ପ୍ରାଣନାଥ କଲେଜ ପକ୍ଷରୁ ପ୍ରାଣନାଥ ସମ୍ମାନ । ଉତ୍କଳ ରତ୍ନରେ ବିଭୂଷିତ ।ହେମଲତା ସମ୍ମାନ । ଆନ୍ତର୍ଜାତୀୟ ରୋଟାରୀ ସମ୍ମାନ । ଦିଓ୍ୱାଲି ବେନ ଚାରିଟେବଲ ଟ୍ରଷ୍ଟ ଦ୍ୱାରା ଆଜୀବନ ସେବିକା ସମ୍ମାନ । ରାଧାନାଥ ରଥ ସମ୍ମାନ । ରେଭେନ୍ସା କଲେଜ ପକ୍ଷରୁ ସମ୍ବର୍ଦ୍ଧନା ।

**ଲିଖିତ ଓ ଅନୁଦିତ ପୁସ୍ତକ -** ଗୀତା ପ୍ରବଚନ, ଭାଗବତ ଧର୍ମସାର, ସ୍ଥିତପ୍ରଜ୍ଞ ଦର୍ଶନ, ନାରୀ ଶକ୍ତି, ସପ୍ତ ଶକ୍ତି, ଶିକ୍ଷା ତତ୍ତ୍ୱ, ଆଚାର୍ଯ୍ୟକୂଳ, ରାଷ୍ଟ୍ରୀୟ ଯୋଜନାର ମୂଳ କଥା, ଶାନ୍ତି ସେନା, କାରାଗାର କାହାଣୀ, ଗ୍ରାମଲକ୍ଷ୍ମୀଙ୍କ ଆରାଧନା, ସର୍ବୋଦୟ ସିଦ୍ଧାନ୍ତ, ଗ୍ରାମଦାନ କଅଣ ଓ କାହିଁକି , ଦସ୍ୟୁ ହୃଦୟରେ ଦେବତା, ସବୁଲୁଣ ଲୋକଙ୍କର, ସରଳା ଦେବୀ, ମାଳତୀ ଚୌଧୁରୀ, ସୁନାମଣୀ, ସ୍ୱାଧୀନତା ସଂଗ୍ରାମରେ ଉତ୍କଳୀୟ ନାରୀ, ରମାଦେବୀ, ଲୁଣର ଗୁଣ, ତରୁଣୀ କନ୍ୟାଙ୍କ ପ୍ରତି, ସ୍ତ୍ରୀ ପୁରୁଷ ମର୍ଯ୍ୟାଦା, ବୁନିଆଦି ଶିକ୍ଷା, ଗାନ୍ଧୀ ଚରିତ, ଦକ୍ଷିଣ ଆଫ୍ରିକା ସତ୍ୟାଗ୍ରହ, ହିନ୍ଦ୍ ସ୍ୱରାଜ, ଅନାସକ୍ତି ଯୋଗ, ଦିବ୍ୟ ଦିପାବଳୀ, ବାଟ ଯେ ଦେଖାଇଲେ ।

**ଇହଲୀଳା ସମ୍ବରଣ -** ୩୧ ଡିସେମ୍ବର ୨୦୧୨



ଗାନ୍ଧୀ ଦର୍ଶନ ଅନୁସାରେ ଏ ଦେହ ଅନ୍ନ ଗ୍ରହଣ କରୁଥିବା ଯାଏ ଅବ୍ୟାହତ ରହିବା ଉଚିତ । ଯମୁନା ମାଉସୀ (ପୁରୀର ସ୍ୱନାମଧନ୍ୟା ଦେବୀ)ଙ୍କ ଦର୍ଶନ ଅନୁସାରେ "ଷାଠିଏ ବର୍ଷ ପୂରିଗଲେ ତେଣିକି ତୁମର ଘସିବା ବେଳ ଆସିଗଲା ଜାଣିବ । ଆଉ ଘାଣ୍ଟି ହେବା କଥା ନୁହେଁଟି । ତେବେ ଯେତେଦିନ ବଞ୍ଚିଥାଇଁ କିଛି କାମ କରୁଥିବା ତ !" ତେଣୁ ଏଣିକି xxxxx ଯେଉଁ ଅନୁଷ୍ଠାନଗୁଡ଼ିକର ମୂଳଦୁଆ ପକାଇବାରେ ଜଣେ ସାଧାରଣ ମୂଲିଆଣୀ ଭଳି ସମୟ ଓ ଶକ୍ତି ଖଟେଇଥିଲି, ସେହି ଅନୁଷ୍ଠାନଗୁଡ଼ିକ ଯଦି ମୋର ସାହାଯ୍ୟ ଲୋଡ଼ିବେ ସେମାନଙ୍କୁ ଯଥାସମ୍ଭବ ସାହାଯ୍ୟ କରିବି କିନ୍ତୁ ମନେ ମନେ ସେଥିରୁ ନିବୃତ୍ତ ହେବାପାଇଁ ମନସ୍ଥ କଲି । ଗୋଟିଏ ଚଉଦ ବର୍ଷର ଅଜ୍ଞ ବାଳିକା ପ୍ରଚଳିତ ସମାଜ ବ୍ୟବସ୍ଥାର ଧରାବନ୍ଧା ଚଲାବାଟକୁ ଛାଡ଼ି ଦେଇ କେବଳ ଶ୍ରଦ୍ଧାକୁ ସମ୍ବଳ କରି ମହାତ୍ମାଗାନ୍ଧୀଙ୍କ ଗବେଷଣାଗାରର ଗିନିପିଗ୍ ହେବାରେ ସ୍ୱେଚ୍ଛାରେ ମନ ବଳାଇଥିଲା । xxxxx ସମଗ୍ର ପୃଥିବୀର ଚିନ୍ତାଶୀଳ ଲୋକେ ଆଜି ଯେଉଁ ହିଂସା ନିରପେକ୍ଷ ସମାଜ ରଚନା ଉପରେ ଗୁରୁତ୍ୱ ଆରୋପ କରୁଛନ୍ତି ସେହି ସମାଜରେ ବ୍ୟକ୍ତିର ଆଚରଣ କିପରି ହେବା ଉଚିତ ସେ ବିଷୟରେ ଗାନ୍ଧୀଜୀ ଯାହା କହିଥିଲେ ତାକୁ ନିଜ ଜୀବନରେ ଆଚରିବା ପାଇଁ ଯେଉଁ ଘାତ ପ୍ରତିଘାତ, ହରଷ ବିଷାଦ, ବିପଦ ସମ୍ପଦ, ଦୁଃଖସୁଖର ଲହଡ଼ି ଭାଙ୍ଗି ଭାଙ୍ଗି ଏ ପଇଁଚାଳିଶଟି ବସନ୍ତ କଟିଲା ଏ ଅନାଦି ଅନନ୍ତ କାଳ ପ୍ରବାହରେ ସେହି ପଇଁଚାଳିଶ ବର୍ଷ ଗୋଟିଏ ଝଲକଣା ସଙ୍ଗେ ସୁଦ୍ଧା ସରି ନୁହେଁ, ପୁଣି ତାହା ଗୋଟିଏ ଜଳବିନ୍ଦୁ ଭଳି କ୍ଷଣସ୍ଥାୟୀ । ତଥାପି ତହିଁରେ ପରମାତ୍ମାଙ୍କ ଅସ୍ତିତ୍ୱ ବିଦ୍ୟମାନ, ତେଣୁ ତାହା ହେୟ ନୁହେଁ । ଜ୍ଞାନ ବିହୀନ ଶ୍ରଦ୍ଧାଦ୍ୱାରା ଯେଉଁ କର୍ମ ସାଧିତ ହୁଏ ସେଥିରେ [illegible] ଓ ମିଥ୍ୟା ଅହଙ୍କାର ରହିବା ହିଁ ସ୍ୱାଭାବିକ ଏବଂ ରହିଥିବ ମଧ୍ୟ । କେ[illegible] ଏତିକି "ନହି କଲ୍ୟାଣକୃତ୍ କଶ୍ଚିତ୍ ଦୁର୍ଗତିଂ ତାତ ଗଚ୍ଛତି ।"

Utsab'13

## ଉତ୍କଳ ଗାନ୍ଧୀ ସ୍ମାରକ ନିଧି

ଦଶଟଙ୍କା